।। ଓଁ ଶ୍ରୀପରମାତ୍ମନେ ନମଃ ।।

1130▲

# ଗୁରୁ ବିନା କଣ ମୁକ୍ତି ନାହିଁ?

क्या गुरु बिना मुक्ति नहीं ? ( ओड़िआ )




ସ୍ୱାମୀ ରାମସୁଖଦାସ

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଗୁରୁ ବିନା ମୁକ୍ତି ନାହିଁ?

## क्या गुरु बिना मुक्ति नहीं? (ओड़िआ)

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ସ୍ୱାମୀ ରାମସୁଖଦାସ

ଭାଷାନ୍ତର—ଡଃ ରଘୁନାଥ ମହାପାତ୍ର

*Books are also available at—*

1. Gita Press, Gorakhpur Ki Pustak-Dukan,
   Bharatiya Towers, Badam Badi, Cuttack ✆ (0671) 2335481
2. Cuttack, Railway Station, Platform No.1
3. Bhubaneswar, Railway Station, Platform No.1
4. Howrah, Railway Station, Platform No. 18
5. Gobind Bhavan-Karyalaya,151, Mahatma Gandhi Road,
   Kolkata ✆ (033) 22686894; Fax 22680251

Fifteenth Reprint 2016 3,000

Total 95,000

**Price : ₹ 7**

**( Seven Rupees only )**

Printed & Published by :

**Gita Press, Gorakhpur—273005 (INDIA)**

(a unit of Gobind Bhavan-Karyalaya, Kolkata)

Phone - (0551) 2334721, 2331250 ; Fax - (0551) 2336997

web : **gitapress.org** e-mail : **booksales@gitapress.org**

**Visit gitapressbookshop.in for online purchase of Gitapress publications.**

1130 kya guru bina oriya_Section_1_Back

॥ ଶ୍ରୀହରିଃ ॥

# ବିନମ୍ର ନିବେଦନ

ସତ୍ସଙ୍ଗ କାର୍ଯ୍ୟକ୍ରମ ନିମିତ୍ତ ମୁଁ ଯେଉଁଠିକି ଯାଏ, ସେଠାରେ ପ୍ରାୟ ଲୋକେ ମୋତେ ଗୁରୁ ବିଷୟରେ ବିଭିନ୍ନ ପ୍ରଶ୍ନ ପଚ୍ଚାରନ୍ତି। ସେହି ପ୍ରଶ୍ନଗୁଡ଼ିକର ଉତ୍ତର ପାଇ ସେମାନେ ସନ୍ତୋଷ ଲାଭ କରନ୍ତି। ଏଥିନେଇ ଅନେକ ସତ୍ସଙ୍ଗୀ ଭାଇ-ଭଉଣୀ ଆଗ୍ରହ ପ୍ରକାଶ କଲେ ଯେ ଏପରି ଗୋଟିଏ ପୁସ୍ତକ ହେବା ଉଚିତ, ଯଦ୍ଦ୍ୱାରା ଲୋକମାନଙ୍କର ଗୁରୁ ବିଷୟକ ସନ୍ଦେହଗୁଡ଼ିକ ମୋଚନ ହୋଇଯିବ। ଏହି ଉଦ୍ଦେଶ୍ୟରେ ଉକ୍ତ ପୁସ୍ତକଟି ଲେଖାଯାଇଛି।

ମୋର ଗୁରୁ ବିଷୟକ ବିଚ୍ଚାରଧାରାଗୁଡ଼ିକୁ ଗଭୀରଭାବରେ ବୁଝି ନ ପାରି କେତେକ କହନ୍ତି ଯେ, ମୁଁ ଗୁରୁଙ୍କର ନିନ୍ଦା କରୁଛି। ଗୁରୁଙ୍କର ନିନ୍ଦା ଓ ଖଣ୍ଡନ ତ କେହିହେଲେ କରି ପାରିବ ନାହିଁ। ଗୁରୁଜନମାନଙ୍କର ମୋ ଉପରେ ଅଶେଷ କୃପା ରହି ଆସିଛି ଏବଂ ଗୁରୁଜନମାନଙ୍କ ପ୍ରତି ମୋ ହୃଦୟରେ ବହୁତ ଆଦରଭାବ ରହିଛି। ଗୁରୁଜନମାନଙ୍କ ଠାରୁ ମୁଁ ଲାଭାନ୍ୱିତ ମଧ୍ୟ ହୋଇଛି। ମାତ୍ର ଯେଉଁମାନେ ଗୁରୁ ସାଜି ଲୋକମାନଙ୍କୁ ଠକିବାରେ ବ୍ୟସ୍ତ, ସେମାନଙ୍କୁ ପ୍ରଶଂସା ମିଳିବ କିପରି? ସେମାନଙ୍କର ତ ନିନ୍ଦା ହେବା ସ୍ୱାଭାବିକ।

ବର୍ତ୍ତମାନ ସମୟରେ ପ୍ରକୃତ ଗୁରୁ ମିଳିବା ଅତ୍ୟନ୍ତ ଦୁର୍ଲଭ ହୋଇ ଯାଉଛି। ଦମ୍ଭ ଓ ପାଷଣ୍ଡତା ଦିନକୁ ଦିନ ବଢ଼ିବାରେ ଲାଗିଛି। ଲୋକମାନଙ୍କୁ ସାବଧାନ କରାଇବା ଉଦ୍ଦେଶ୍ୟରେ ଶାସ୍ତ୍ରମାନେ ମଧ୍ୟ ଆଗରୁ କହି ଦେଇଛନ୍ତି ଯେ, କଳିଯୁଗରେ ଦାମ୍ଭିକ ଓ ପାଷଣ୍ଡ ଗୁରୁ ହେବେ। ତେଣୁ ଆତ୍ମକଲ୍ୟାଣାଭିଳାଷୀ ସାଧକମାନଙ୍କର ପ୍ରକୃତ ମାର୍ଗଦର୍ଶନ ପାଇଁ ଏହି ପୁସ୍ତକଟି ଲେଖାଯାଇଛି। ଏହା ପୂର୍ବରୁ ମଧ୍ୟ 'ଗୁରୁ ତତ୍ତ୍ୱ' ନାମକ ଗୋଟିଏ ଛୋଟ ପୁସ୍ତିକା ଛପାଯାଇଛି।

ପ୍ରସ୍ତୁତ ପୁସ୍ତକରେ 'ଗୁରୁଗୀତା'ରୁ ମଧ୍ୟ କେତୋଟି ଶ୍ଳୋକ ପ୍ରମାଣସ୍ୱରୂପ ଉଦ୍ଧୃତ ହୋଇଛି। ମାତ୍ର ବହୁତ ଅନ୍ୱେଷଣ ସତ୍ତ୍ୱେ 'ଗୁରୁଗୀତା'ର ଆଧାର ଓ ରଚୟିତାଙ୍କ ବିଷୟରେ କିଛି ଜଣାପଡ଼ିଲା ନାହିଁ। ଗୁରୁଗୀତାର ଶେଷରେ ତାହା ସ୍କନ୍ଦପୁରାଣରୁ ଉଦ୍ଧାର କରାଯାଇଛି ବୋଲି ଲେଖାଯାଇଛି, ଅଥଚ ସ୍କନ୍ଦପୁରାଣର କୌଣସି ପ୍ରକାଶନରେ ମୋତେ 'ଗୁରୁଗୀତା' ମିଳିଲା ନାହିଁ। ଅନେକ ସ୍ଥାନରୁ ପ୍ରକାଶିତ ଗୁରୁଗୀତାରେ ମଧ୍ୟ ପାର୍ଥକ୍ୟ ଦେଖାଯାଏ। ଯଦି କୌଣସି ବିଦ୍ୱାନ୍ ଏ ବିଷୟରେ କିଛି ଜାଣିଥାନ୍ତି, ତେବେ ମୋତେ ଅବଗତ କରାଇବା ପାଇଁ ଅନୁରୋଧ।

ପାଠକମାନଙ୍କୁ ପ୍ରାର୍ଥନା ଯେ, ସେମାନେ ପ୍ରସ୍ତୁତ ପୁସ୍ତକକୁ ମନଯୋଗ ସହକାରେ ପଢ଼ନ୍ତୁ ଏବଂ ନିଷ୍ଠାର ସହିତ ଭଗବଦ୍‌ଅଭିମୁଖୀ ହୁଅନ୍ତୁ। କୌଣସି ବ୍ୟକ୍ତିବିଶେଷର ଅନୁଗାମୀ ନ ହୋଇ ତତ୍ତ୍ୱର ଅନୁଗାମୀ ହୁଅନ୍ତୁ।

ବିନୀତ—

**ସ୍ୱାମୀ ରାମସୁଖଦାସ**

॥ ଶ୍ରୀହରିଃ ॥

# ବିଷୟ ସୂଚୀ

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଗୁରୁ କାହାକୁ କହନ୍ତି?

ଯାହାଙ୍କ ଠାରୁ କୌଣସି ବିଷୟରେ ଆମକୁ ଜ୍ଞାନାଲୋକ ମିଳେ, ଆମର ଅଜ୍ଞାନାନ୍ଧକାର ଦୂରୀଭୂତ ହୁଏ, ସେହି ବିଷୟରେ ସେ ଆମର ଗୁରୁ । ଧରାଯାଉ ଆମେ କାହାକୁ ବାଟ ପଗ୍ଚରିଲେ ଏବଂ ସେ ଆମକୁ ବାଟ ବତାଇଦେଲେ, ତେବେ ଆମେ ତାଙ୍କୁ ଗୁରୁ ବୋଲି ମାନୁ ବା ନ ମାନୁ, ସେ ଆମର ଗୁରୁ ହୋଇଗଲେ । ତାଙ୍କ ସହିତ ଗୁରୁ-ଶିଷ୍ୟରୂପକ ସମ୍ବନ୍ଧ ସ୍ଥାପନର କୌଣସି ଆବଶ୍ୟକତା ନାହିଁ । ବିବାହରେ ପୁରୋହିତ ବର ସହିତ କନ୍ୟାର ସମ୍ବନ୍ଧ କରାଇ ଦିଅନ୍ତି, ଯାହା ଫଳରେ ବର ଓ କନ୍ୟାଙ୍କ ମଧ୍ୟରେ ଆଜୀବନ ପତି-ପତ୍ନୀର ସମ୍ବନ୍ଧ ସ୍ଥାପିତ ହୋଇଯାଏ । ସେହି କନ୍ୟା ପତିବ୍ରତା ହୋଇଯାଏ । ତା'ପରେ ସେମାନଙ୍କର ପୁରୋହିତ କଥା ଆଉ କେବେ ମନେ ପଡ଼େ ନାହିଁ; ଏବଂ ମନେ ପକାଇବା ପାଇଁ ଶାସ୍ତ୍ରମାନଙ୍କରେ ବିଧାନ ମଧ୍ୟ ନାହିଁ । ସେହିପରି, ଗୁରୁ ଭଗବାନଙ୍କ ସହିତ ଆମର ସମ୍ବନ୍ଧ କରାଇଦେବା ପରେ ଗୁରୁଙ୍କର କାମ ଶେଷ । ତାତ୍ପର୍ଯ୍ୟ ହେଲା, ମନୁଷ୍ୟକୁ ଭଗବାନଙ୍କର ସମ୍ମୁଖ କରାଇବା ଗୁରୁଙ୍କର କାମ । ମନୁଷ୍ୟକୁ ତାଙ୍କ ନିଜ ପ୍ରତି ସମ୍ମୁଖ କରାଇବା କିମ୍ବା ତାଙ୍କ ନିଜ ସହିତ ସମ୍ବନ୍ଧ କରାଇବା ଗୁରୁଙ୍କର କାମ ନୁହେଁ । ସେହିପରି, ଆମର ମଧ୍ୟ କାମ ହେଉଛି ଭଗବାନଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିବା, ଗୁରୁଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିବା ଆମର କାମ ନୁହେଁ । ସଂସାରରେ ଯେପରି ମାଆ, ବାପା, ଭାଇ, ଭଉଣୀ, ସ୍ତ୍ରୀ, ପୁତ୍ର ଇତ୍ୟାଦି ଅନେକ ସମ୍ବନ୍ଧ ଅଛି, ସେହିପରି ଯଦି ଗୁରୁଙ୍କ ସଙ୍ଗରେ ଆଉ ଏକ ନୂତନ ସମ୍ବନ୍ଧ ହୋଇଗଲା, ତେବେ ଏହାଦ୍ୱାରା ଲାଭ କ'ଣ ହେଲା? ଆଗରୁ ଅନେକ ବନ୍ଧନ ଥିଲା, ଏବେ ଆଉ ଗୋଟିଏ ନୂଆ ବନ୍ଧନ ହୋଇଗଲା! ଆମେ ଭଗବାନଙ୍କ ଅଂଶ ହୋଇଥିବାରୁ ଭଗବାନଙ୍କ ସହିତ ଆମର ସମ୍ବନ୍ଧ ଅନାଦି, ଚିରନ୍ତନ, ନିତ୍ୟ ଓ ସ୍ୱାଭାବିକ—**'ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ'**

(ଗୀତା ୧୫।୭), **'ଈଶ୍ୱର ଅଂସ ଜୀବ୍ର ଅବିନାସୀ'** (ମାନସ, ଉତ୍ତର. ୧୧୭।୧)। ଆମେ ସେହି ସମ୍ବନ୍ଧକୁ ଭୁଲିଯାଇଛେ। ସେହି ବିସ୍ମୃତ ସମ୍ବନ୍ଧକୁ ଗୁରୁ ସ୍ମରଣ କରାଇ ଦିଅନ୍ତି ମାତ୍ର, ସେ ଅନ୍ୟ କୌଣସି ନୂତନ ସମ୍ବନ୍ଧ କରାନ୍ତି ନାହିଁ।

ସାଧାରଣତଃ ମୁଁ ପଗ୍ଚରେ ଯେ ଆଗ ପୁଅ ନା ଆଗ ବାପା? ପ୍ରାୟ ଲୋକେ ଉତ୍ତର ଦିଅନ୍ତି ଯେ ଆଗ ବାପା। କିନ୍ତୁ ବାସ୍ତବରେ ଦେଖିଲେ ଆଗ ପୁଅ, ତା'ପରେ ବାପା। କାରଣ ପୁଅ ଜନ୍ମ ନ ହେବା ପର୍ଯ୍ୟନ୍ତ 'ବାପା' ସଂଜ୍ଞା ହୁଏ ନାହିଁ। କୌଣସି ବ୍ୟକ୍ତିର ପୁଅ ଜନ୍ମ ହେଲେ ଯାଇ ତା'ର ନାମ ବାପା ହୁଏ। ସେହିପରି ଶିଷ୍ୟକୁ ତତ୍ତ୍ୱଜ୍ଞାନ ହୋଇଯିବା ପରେ ତା'ର ମାର୍ଗଦର୍ଶକଙ୍କ ନାମ 'ଗୁରୁ' ହୁଏ। ଶିଷ୍ୟକୁ ଜ୍ଞାନ ଲାଭ ହେବା ପୂର୍ବରୁ ସେ ଗୁରୁ ପଦବାଚ୍ୟ ନୁହନ୍ତି। ତେଣୁ ଉଲ୍ଲେଖ ଅଛି—

**ଗୁକାରଶ୍ଚାନ୍ଧକାରୋ ହି ରୁକାରସ୍ତେଜ ଉଚ୍ୟତେ।**
**ଅଜ୍ଞାନଗ୍ରାସକଂ ବ୍ରହ୍ମ ଗୁରୁରେବ ନ ସଂଶୟଃ॥**

(ଗୁରୁଗୀତା)

ଅର୍ଥାତ୍ ଅନ୍ଧକାରର ନାମ 'ଗୁ' ଏବଂ ଆଲୋକର ନାମ 'ରୁ'। ତେଣୁ ଯିଏ ଅଜ୍ଞାନରୂପୀ ଅନ୍ଧକାରକୁ ବିନାଶ କରି ଦିଅନ୍ତି, ତାଙ୍କ ନାମ 'ଗୁରୁ'।

ଗୁରୁ ବିଷୟକ ଗୋଟିଏ ପ୍ରସିଦ୍ଧ ଦୋହା ହେଲା—

**ଗୁରୁ ଗୋବିନ୍ଦ ଦୋଉ ଖଡ଼େ, କିନକେ ଲାଗୁଁ ପାୟ।**
**ବଲିହାରୀ ଗୁରୁଦେବ୍ବକୀ, ଗୋୱିନ୍ଦ ଦିୟୋ ବତାୟ॥**

ଯେ ଗୋବିନ୍ଦଙ୍କ ସମ୍ବନ୍ଧରେ ଜ୍ଞାନ କରାଇଦେଲେ, ତାଙ୍କୁ ପ୍ରତ୍ୟକ୍ଷରୂପରେ ସମ୍ମୁଖରେ ଆବିର୍ଭାବ କରାଇଦେଲେ, ସେହି ଗୁରୁଙ୍କୁ କୋଟି ଜୁହାର! ଗୋବିନ୍ଦଙ୍କ ସମ୍ବନ୍ଧରେ ଜ୍ଞାନ ନ କରାଇ କେବଳ ଗୁରୁ ହୋଇଯିବା ପ୍ରତାରଣା ମାତ୍ର। କେବଳ ଗୁରୁ ହୋଇଗଲେ ଗୁରୁପଣିଆ

ସିଦ୍ଧ ହୁଏ ନାହିଁ । ଏକୁଟିଆ ଉପସ୍ଥିତ ଗୁରୁଙ୍କର କୌଣସି ମହିମା ନାହିଁ । ମହିମା ପ୍ରକୃତରେ ସେହି ଗୁରୁଙ୍କର, ଯେଉଁ ଗୁରୁଙ୍କ ସଙ୍ଗରେ ଗୋବିନ୍ଦ ମଧ୍ୟ ଉପସ୍ଥିତ—'ଗୁରୁ ଗୋବିନ୍ଦ ଦୋଉ ଖଡ଼େ' ଅର୍ଥାତ୍ ଯିଏ ଭଗବାନଙ୍କୁ ପ୍ରାପ୍ତ କରାଇ ଦେଇଛନ୍ତି, ପ୍ରକୃତରେ ମହିମା ସେହି ଗୁରୁଙ୍କର ।

ଯାହାଙ୍କ ଅନ୍ତରରେ ଶିଷ୍ୟର କଲ୍ୟାଣ କରିବାର ଇଚ୍ଛା ଥାଏ, ସେ ହିଁ ପ୍ରକୃତ ଗୁରୁ ଏବଂ ଯାହାର ଗୁରୁଙ୍କ ପ୍ରତି ଭକ୍ତି ଥାଏ, ସେ ହିଁ ପ୍ରକୃତ ଶିଷ୍ୟ ।

**କୋ ବା ଗୁରୁର୍ଯୋ ହିତୋପଦେଷ୍ଟା**
**ଶିଷ୍ୟସ୍ତୁ କୋ ଯୋ ଗୁରୁଭକ୍ତ ଏବ ।**

(ପ୍ରଶ୍ନୋତ୍ତରୀ ୭)

ଗୁରୁ ଯଦି ଭଗବତ୍‌ପ୍ରାପ୍ତ ପୁରୁଷ ହୋଇଥିବେ ଏବଂ ଶିଷ୍ୟ ମନପ୍ରାଣ ଦେଇ ତାଙ୍କ ଆଜ୍ଞା ପାଳନ କରୁଥିବ, ତେବେ ଶିଷ୍ୟର ଉଦ୍ଧାର ହେବାରେ ସନ୍ଦେହର ଅବକାଶ ନାହିଁ ।

**ପାରସ କେରା ଗୁଣ କିସା, ପଲଟା ନହୀଁ ଲୋହା ।**
**କୈ ତୋ ନିଜ ପାରସ ନହୀଁ, କୈ ବୀଚ ରହା ବିଛୋହା ।।**

ଯଦି ପରଶମଣିର ସ୍ପର୍ଶ ପାଇ ମଧ୍ୟ ଲୁହା ସୁନାରେ ପରିଣତ ହେଲା ନାହିଁ, ତେବେ ସେହି ପରଶମଣି ଖାଣ୍ଟି ପରଶମଣି ନୁହେଁ ଅଥବା ଲୁହା ଖାଣ୍ଟି ଲୁହା ନୁହେଁ ଅଥବା ପରଶମଣି ଓ ଲୁହା ମଝିରେ ଅନ୍ୟ କୌଣସି ପ୍ରତିବନ୍ଧକ ରହିଛି । ସେହିପରି ଯଦି ଶିଷ୍ୟକୁ ତତ୍ତ୍ୱଜ୍ଞାନ ପ୍ରାପ୍ତ ହେଲା ନାହିଁ, ତେବେ ଗୁରୁ ତତ୍ତ୍ୱପ୍ରାପ୍ତ ନୁହନ୍ତି କିମ୍ବା ଶିଷ୍ୟ ଆଜ୍ଞାପାଳକ ନୁହେଁ ଅଥବା ଗୁରୁ ଓ ଶିଷ୍ୟଙ୍କ ମଝିରେ କୌଣସି ପ୍ରତିବନ୍ଧକ (କପଟଭାବ) ରହିଛି ।

□□□

# ପ୍ରକୃତ ଗୁରୁ

ଯିଏ କେବଳ ଚେଲାର କଲ୍ୟାଣ (ଉଦ୍ଧାର) କରିବା କଥା ଚିନ୍ତା କରୁଥାନ୍ତି, ସେ ହିଁ ପ୍ରକୃତ ଗୁରୁ । ଯାହାଙ୍କ ହୃଦୟରେ ଆମର କଲ୍ୟାଣ କରିବାର ଭାବନା ନାହିଁ, ସେ ଆମର ଗୁରୁ ହେଲେ କିପରି? ଯେ ହୃଦୟର ସହ ଆମର କଲ୍ୟାଣ ଚାହାନ୍ତି, ଆମେ ତାଙ୍କୁ ଗୁରୁ ବୋଲି ମାନୁ ବା ନ ମାନୁ ଏବଂ ସେ ନିଜେ ଗୁରୁ ହୁଅନ୍ତୁ ବା ନ ହୁଅନ୍ତୁ, ସେ ଆମର ପ୍ରକୃତ ଗୁରୁ । "ମୁଁ ଗୁରୁ ହୋଇଯାଏଁ, ଅନ୍ୟମାନେ ମୋତେ ଗୁରୁ ବୋଲି ମାନନ୍ତୁ, ମୋର ଚେଲା ହୋଇଯାନ୍ତୁ ।" ଏପରି ଇଚ୍ଛା ତାଙ୍କ ମନରେ ନ ଥାଏ । ଯାହା ମନରେ ଧନର ଇଚ୍ଛା ଥାଏ, ସେ ହେଉଛି ଧନର ଦାସ । ସେହିପରି, ଯାହା ମନରେ ଚେଲା କରିବାର ଇଚ୍ଛା ଥାଏ, ସେ ହେଉଛି ଚେଲାର ଦାସ । ଯାହା ମନରେ ଗୁରୁ ସାଜିବାର ଇଚ୍ଛା ରହିଛି, ସେ ଅନ୍ୟମାନଙ୍କର କଲ୍ୟାଣ କରି ପାରିବ ନାହିଁ । ଯିଏ ଚେଲାଠାରୁ ଟଙ୍କାପଇସା ଆଶା କରୁଥାଏ, ସେ ଗୁରୁ ନୁହେଁ, ବରଂ ଚେଲାର ବି ନାତିଚେଲା । କାରଣ ଚେଲା ପାଖରେ ଟଙ୍କା ଥିବାରୁ ଟଙ୍କା ହେଉଛି ଚେଲାର ଚେଲା ଏବଂ ଗୁରୁ ଟଙ୍କାପଇସାର ଚେଲା ହୋଇଥିବାରୁ ସେ ତ ଚେଲାର ନାତିଚେଲା ହେଲେ । ଆପଣ ଟିକିଏ ବିଚାର କରନ୍ତୁ, ଯିଏ ଆପଣଙ୍କ ଠାରୁ କିଛି ଆଶା କରେ, ସେ କ'ଣ ଗୁରୁ ହୋଇ ପାରିବ? ଏହା ଆଦୌ ସମ୍ଭବ ନୁହେଁ । ଯିଏ ଆପଣଙ୍କ ଠାରୁ ଧନ, ମାନ-ସମ୍ମାନ, ଆଦର ଇତ୍ୟାଦି ଆଶା କରେ, ସେ ଆପଣଙ୍କର ଚେଲା, ଗୁରୁ ନୁହେଁ । ପ୍ରକୃତ ମହାତ୍ମାଙ୍କର ସଂସାରରେ କୌଣସି ପ୍ରୟୋଜନ ନ ଥାଏ, ବରଂ ସଂସାରର ତାଙ୍କଠାରେ ପ୍ରୟୋଜନ ଥାଏ । ଯାହାଙ୍କର କୌଣସି ପ୍ରୟୋଜନ ନ ଥାଏ, ସେ ହିଁ ପ୍ରକୃତ ଗୁରୁ ।

**କବୀର ଜୋଗୀ ଜଗତ ଗୁରୁ, ତଜୈ ଜଗତ କୀ ଆସ।**
**ଜୋ ଜଗ କୀ ଆସା କରୈ ତୋ ଜଗତ ଗୁରୁ ୱହ ଦାସ॥**

ଯେଉଁମାନେ ପ୍ରକୃତ ସନ୍ତମହାତ୍ମା, ତାଙ୍କର ଗୁରୁ ହେବା ପାଇଁ ଆଦୌ ସଉକ ନ ଥାଏ, ବରଂ 'ଜଗତର ଉଦ୍ଧାର ହେଉ'—ସେମାନେ ଏହି ଇଚ୍ଛା କରନ୍ତି। ତାଙ୍କ ହୃଦୟରେ ଜଗତର ଉଦ୍ଧାର ପାଇଁ ସ୍ୱାଭାବିକଭାବରେ ଦୃଢ଼ ନିଷ୍ଠା ଥାଏ। ମୁଁ ମଧ୍ୟ ପ୍ରକୃତ ସନ୍ତମହାତ୍ମାଙ୍କ ଅନ୍ୱେଷଣ ପାଇଁ ବ୍ୟାକୁଳ ଥିଲି ଏବଂ ପ୍ରକୃତ ସନ୍ତମହାତ୍ମାଙ୍କ ସହିତ ମୋର ସାକ୍ଷାତ ମଧ୍ୟ ହେଲା। କିନ୍ତୁ ସେମାନେ କଦାପି କହିଲେ ନାହିଁ ଯେ ତୁମେ ଚେଲା ହେଲେ ଯାଇ ତୁମର କଲ୍ୟାଣ ହେବ। ଯେଉଁମାନଙ୍କର ଗୁରୁ ହେବା ପାଇଁ ଇଚ୍ଛା ଥାଏ, ସେଇମାନେ ହିଁ ପ୍ରଚାର କରୁଥାନ୍ତି ଯେ ଗୁରୁ କରିବା ନିତାନ୍ତ ଆବଶ୍ୟକ, ଗୁରୁ ବିନା ମୁକ୍ତି ହୁଏ ନାହିଁ, ଇତ୍ୟାଦି ଇତ୍ୟାଦି।

କେବଳ ବର୍ତ୍ତମାନ କାଳର କୌଣସି ମନୁଷ୍ୟ ଯେ ଗୁରୁ ହୋଇ ପାରିବେ, ଏପରି କୌଣସି ବିଧାନ ନାହିଁ। ଶ୍ରୀଶୁକଦେବ ବହୁତ ପୂର୍ବରୁ ଶରୀର ଧାରଣ କରିଥିଲେ, କିନ୍ତୁ ସେ ଏ କାଳର ସନ୍ତ ଚରଣଦାସଙ୍କୁ ଦୀକ୍ଷା ଦେଲେ! ପ୍ରକୃତ ଶିଷ୍ୟକୁ ଗୁରୁ ଆପେ ଆପେ ଆସି ଦୀକ୍ଷା ଦିଅନ୍ତି। ପ୍ରକୃତ ଶିଷ୍ୟ ପକ୍ଷେ ଗୁରୁଙ୍କୁ ଖୋଜି ବୁଲିବାର ଆବଶ୍ୟକତା ନାହିଁ; ଗୁରୁ ଛାଏଁ ଛାଏଁ ଆସନ୍ତି। ଯାହାର ହୃଦୟରେ ଉତ୍କଣ୍ଠା ଥାଏ, ତାକୁ ପ୍ରକୃତ ମହାତ୍ମା ମିଳିଯାଆନ୍ତି—

**ଜେହି କେଁ ଜେହି ପର ସତ୍ୟ ସନେହୂ। ସୋ ତେହି ମିଲଇ ନ କଛୁ ସଂଦେହୂ॥**

(ମାନସ, ବାଲ. ୨୫୯।୩)

ଲୋକେ ଗୁରୁଙ୍କୁ ଖୋଜି ବୁଲନ୍ତି, କିନ୍ତୁ ପ୍ରକୃତ ଗୁରୁ ଶିଷ୍ୟଙ୍କୁ ଖୋଜନ୍ତି। ତାଙ୍କ ହୃଦୟରେ ଅଶେଷ ଦୟା ପୂରି ରହିଥାଏ। ଏଥିନେଇ ଗୋଟିଏ ଉଦାହରଣ ଦିଆଯାଇ ପାରେ—ସଂସାରରେ ମାଆର ସ୍ଥାନ

ସର୍ବୋଚ୍ଚ । ମାଆ ସମସ୍ତ ଗୁରୁଙ୍କ ମଧ୍ୟରେ ପ୍ରଥମ ଗୁରୁ । ଶିଶୁ ମାଆଠାରୁ ହିଁ ଜନ୍ମ ଗ୍ରହଣ କରେ, ମାଆର ହିଁ କ୍ଷୀର ପିଏ, ମାଆର କୋଳରେ ହିଁ ଖେଳେ ଓ ମାଆ ଦ୍ୱାରା ହିଁ ଲାଳିତପାଳିତ ହୁଏ । ମାଆ ବିନା ଶିଶୁ କଦାପି ଜନ୍ମ ଗ୍ରହଣ କରି ପାରିବ ନାହିଁ, ରହି ପାରିବ ନାହିଁ ଓ ଲାଳିତପାଳିତ ମଧ୍ୟ ହୋଇ ପାରିବ ନାହିଁ । କିନ୍ତୁ ମାଆ ବର୍ଷ ବର୍ଷ ଧରି ଶିଶୁ ବିନା ରହି ପାରିବ, ଶିଶୁ ବିନା ମାଆର କିଛି ଅସୁବିଧା ହେବ ନାହିଁ । ଏସବୁ ସତ୍ତ୍ୱେ ମାଆର ସ୍ୱଭାବ ହେଲା ଯେ, ସେ ନିଜେ ବରଂ ଭୋକରେ ରହିଯିବ, କିନ୍ତୁ ଶିଶୁକୁ ଭୋକିଲା ରହିବାକୁ ଦେବ ନାହିଁ । ସେ ନିଜେ କଷ୍ଟ ସହି ଶିଶୁକୁ ପାଳନ କରେ । ପ୍ରକୃତ ଗୁରୁ ଠିକ୍ ଏହି ସ୍ୱଭାବର ହୋଇଥାଆନ୍ତି । ସେ ଯାହାକୁ ଶିଷ୍ୟରୂପେ ସ୍ୱୀକାର କରନ୍ତି, ତା'ର ଉଦ୍ଧାର କରନ୍ତି । ଶିଷ୍ୟର ଉଦ୍ଧାର କରିବାଭଳି ସାମର୍ଥ୍ୟ ତାଙ୍କର ଥାଏ । ମୁଁ ଏଭଳି କଥାର ପ୍ରତ୍ୟକ୍ଷଦର୍ଶୀ ।

ଜଣେ ସନ୍ଥ ଥିଲେ । ସେ ଅନ୍ୟକୁ ଶିଷ୍ୟ ମନେ ନ କରି ମିତ୍ର ମନେ କରୁଥିଲେ । ଥରେ ତାଙ୍କର କୌଣସି ମିତ୍ରର ଅସାଧ୍ୟ ରୋଗ ହେବାରୁ ମିତ୍ର ଜଣକ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ଚିକିତ୍ସା ଓ ଔଷଧ ଦ୍ୱାରା ସେ ଭଲ ହେଲେ ନାହିଁ । ସନ୍ଥ ଜଣକ ତାଙ୍କୁ କହିଲେ, ''ତୁମେ ତୁମର ରୋଗ ମୋତେ ଦେଇଦିଅ ।'' ସେ କହିଲେ, ''ମୁଁ ନିଜର ରୋଗ ଆପଣଙ୍କୁ ଦେବି କିପରି?'' ସନ୍ଥ କହିଲେ, ''ଏବେ ତୁମେ ମୋତେ ଆଉ ମନା କର ନାହିଁ, ପ୍ରତିବନ୍ଧକ ସୃଷ୍ଟି କର ନାହିଁ; ତୁମର ଅଧା ରୋଗ ମୋତେ ଦେଇଦିଅ ।'' ମିତ୍ର ଜଣକ ସ୍ୱୀକାର କରିବାରୁ ସନ୍ଥ ଅଧା ରୋଗ ନିଜେ ଭୋଗ କଲେ । ତା'ପରେ କୌଣସି ଔଷଧ ସେବନ ନ କରି ମଧ୍ୟ ଆପେ ଆପେ ମିତ୍ରଙ୍କର ରୋଗ ଭଲ ହୋଇଗଲା । ଏହିପରି ଯେଉଁମାନେ ସାମର୍ଥ୍ୟବାନ୍, ସେମାନେ ହିଁ ଗୁରୁ ହୋଇ ପାରିବେ । କିନ୍ତୁ ଏତେ ସାମର୍ଥ୍ୟ ଥିବା ସତ୍ତ୍ୱେ ସେ ତାଙ୍କ ଜୀବନରେ କାହାକୁ ଚେଲା କରି ନ ଥିଲେ ।

କାହାକୁ ଗୁରୁରୂପେ ସ୍ୱୀକାର କରିବା ପରେ କୁହାଯାଏ ଯେ ଗୁରୁ ଗୋବିନ୍ଦଙ୍କ ଠାରୁ ମଧ୍ୟ ବଡ଼। ଏହାର ପରିଣାମରେ ଚେଲା ଭଗବାନଙ୍କ ଭଜନ ଛାଡ଼ି ଗୁରୁଙ୍କ ଭଜନରେ ମନ ଦିଏ। ଏହା ବଡ଼ ଅନର୍ଥକାରୀ ଓ ଏହା ନରକଗାମୀ କରାଏ! ଜଣେ ଭଲ ସନ୍ଥଙ୍କୁ ତାଙ୍କର ଚେଲାମାନେ ଭଗବାନଙ୍କ ଠାରୁ ବଡ଼ ମନେ କରିବାରୁ ସନ୍ଥ ଜଣକ ଚେଲା ଗ୍ରହଣ କରିବା ଛାଡ଼ିଦେଲେ, ତାଙ୍କ ଜୀବନରେ ସେ ଆଉ କାହାକୁ ଚେଲାରୂପରେ ଗ୍ରହଣ କଲେ ନାହିଁ। ଶିଷ୍ୟମାନେ ଭଗବାନଙ୍କୁ ତ ଧରୁ ନାହାନ୍ତି, ଜାବୁଡ଼ି ଧରୁଛନ୍ତି ଗୁରୁଙ୍କୁ! ଗୁରୁଙ୍କ ଠାରୁ ଉପଦେଶ ଶୁଣି ମନୁଷ୍ୟ ଭଗବାନଙ୍କ ପ୍ରତି ମନ ଦେଲେ ତ ଭଲ କଥା, କିନ୍ତୁ ସେ ଯଦି ଗୁରୁଙ୍କୁ ଜାବୁଡ଼ି ଧରେ, ତେବେ ବହୁତ କ୍ଷତି ହୁଏ! ଯେଉଁମାନେ ଚେଲାମାନଙ୍କୁ ନିଜ ଆଡ଼କୁ ଆକର୍ଷିତ କରନ୍ତି, ସେମାନେ ଗୁରୁ ନୁହନ୍ତି ବରଂ ସେମାନେ କାଳନେମି ଅଥବା କପଟମୁନି। ପ୍ରକୃତ ଗୁରୁ ଶିଷ୍ୟମାନଙ୍କୁ ଭଗବଦ୍‌ଅଭିମୁଖୀ କରାନ୍ତି। ଗୁରୁ, ପିତା, ମାତା, ବନ୍ଧୁ ଓ ସାମର୍ଥ୍ୟ କେହିହେଲେ ଭଗବାନଙ୍କ ପରି ଆମର ହିତାକାଂକ୍ଷୀ ନୁହନ୍ତି—

**ଉମା ରାମ ସମ ହିତ ଜଗ ମାହୀଁ। ଗୁରୁ ପିତୁ ମାତୁ ବଂଧୁ ପ୍ରଭୁ ନାହୀଁ॥**

(ମାନସ, କିଷ୍କିନ୍ଧା ୧୨।୧)

ଭଗବାନଙ୍କ ପୂଜା ପରିବର୍ତ୍ତେ ନିଜର ପୂଜା କରାଇବା ପାଷଣ୍ଡମାନଙ୍କର କାମ। ଯାହା ମନରେ ଚେଲା କରିବାର ଇଚ୍ଛା ଥାଏ, ଟଙ୍କାପଇସାର ଇଚ୍ଛା ଥାଏ, ଘର (ଆଶ୍ରମ ଆଦି) ତୋଳିବାର ଇଚ୍ଛା ଥାଏ, ମାନବଡ଼ିମା ପାଇବାର ଇଚ୍ଛା ଥାଏ, ଖ୍ୟାତି ଲାଭର ଇଚ୍ଛା ଥାଏ, ତା'ଦ୍ୱାରା ଅନ୍ୟର କଲ୍ୟାଣ (ଉଦ୍ଧାର) ହେବା କଥା ଦୂରେ ଥାଉ, ତା'ର ନିଜର ମଧ୍ୟ କଲ୍ୟାଣ ହୋଇ ପାରେ ନାହିଁ—

**ଶିଷ ଶାଖା ସୁତ ହିତକୋ ତରସେ। ପରମ ତତ୍ତ୍ୱକୋ କୈସେ ପରସେ?**

କପଟମୁନି ଦ୍ୱାରା ଯେପରି ରାଜା ପ୍ରତାପଭାନୁଙ୍କର ଦୁର୍ଦଶା ହୋଇଥିଲା, ଏପରି ଭଣ୍ଡମାନଙ୍କ ଦ୍ୱାରା ଲୋକମାନଙ୍କର ସେହିପରି ଦୁର୍ଦଶା ହୁଏ (ଦ୍ରଷ୍ଟବ୍ୟ—ମାନସ, ବାଲ. ୧୫୩—୧୭୫) । ଯାହାଙ୍କ ହୃଦୟରେ ସମସ୍ତଙ୍କର କଲ୍ୟାଣ ଭାବନା ନିହିତ, ଅନ୍ୟମାନଙ୍କର କଲ୍ୟାଣ କରିବା ବ୍ୟତୀତ ଯାହାଙ୍କର ଅନ୍ୟ କୌଣସି ଇଚ୍ଛା ନ ଥାଏ, ତାଙ୍କ ସଙ୍ଗଲାଭରେ କଲ୍ୟାଣ ହୁଏ । ଯେ ନିଜେ ଇଚ୍ଛାବିହୀନ, ସେ ହିଁ ଅନ୍ୟମାନଙ୍କୁ ଇଚ୍ଛାବିହୀନ କରାଇ ପାରନ୍ତି । ଯେଉଁମାନଙ୍କର ଇଚ୍ଛା ଥାଏ, ସେମାନଙ୍କ ଦ୍ୱାରା ଠକାମି ହୁଏ, କଲ୍ୟାଣ ହୁଏ ନାହିଁ ।

ଏହା ସିଦ୍ଧାନ୍ତ ଯେ, ଯିଏ ନିଜେ ଦୁର୍ବଳ, ସେ ଅନ୍ୟକୁ ଦୁର୍ବଳ କରେ ଏବଂ ଯିଏ ନିଜେ ସାମର୍ଥ୍ୟବାନ୍, ସେ ଅନ୍ୟକୁ ସାମର୍ଥ୍ୟବାନ୍ କରି ଗଢ଼ିତୋଳେ । ଯିଏ ଅନ୍ୟମାନଙ୍କୁ ଚେଲା କରେ, ସେ ସାମର୍ଥ୍ୟବାନ୍ ନୁହେଁ । ଯେ ପ୍ରକୃତ ଗୁରୁ, ସେ ଅନ୍ୟମାନଙ୍କୁ ମଧ୍ୟ ଗୁରୁ କରି ଦିଅନ୍ତି । ଭଗବାନ ସମସ୍ତଙ୍କ ଠାରୁ ବଡ଼, ତେଣୁ ସେ କଦାପି କାହାକୁ ଛୋଟ କରନ୍ତି ନାହିଁ । ଯେ ଭଗବାନଙ୍କର ଶରଣାପନ୍ନ ହୋଇଯାଏ, ସେ ସଂସାରରେ ବଡ଼ ହୋଇଯାଏ । ଭଗବାନ ସମସ୍ତଙ୍କୁ ନିଜର ମିତ୍ର କରନ୍ତି, ନିଜ ସମକକ୍ଷ କରନ୍ତି, କାହାକୁ ଚେଲା କରନ୍ତି ନାହିଁ । ଉଦାହରଣସ୍ୱରୂପ—ନିଷାଦରାଜ ସିଦ୍ଧଭକ୍ତ, ବିଭୀଷଣ ସାଧକ ଓ ସୁଗ୍ରୀବ ଭୋଗୀ ହୋଇଥିଲେ ମଧ୍ୟ ପ୍ରଭୁ ରାମଚନ୍ଦ୍ର ତିନିଜଣଙ୍କୁ ନିଜର ମିତ୍ରରୂପେ ସ୍ୱୀକାର କଲେ । ଅର୍ଜୁନ ନିଜକୁ ଭଗବାନଙ୍କର ଶିଷ୍ୟ ମନେ କରୁଥିଲେ—**'ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନମ୍'** (ଗୀତା ୨ । ୭), କିନ୍ତୁ ଭଗବାନ ନିଜକୁ ଗୁରୁ ମନେ ନ କରି ଅର୍ଜୁନଙ୍କ ମିତ୍ର ମନେ କରୁଥିଲେ—**'ଭକ୍ତୋଽସି ମେ ସଖା ଚେତି'** (ଗୀତା ୪ । ୩), **'ଇଷ୍ଟୋଽସି'** (ଗୀତା ୧୮ । ୬୪) । ବେଦରେ ମଧ୍ୟ ଭଗବାନଙ୍କୁ ଜୀବର ସଖା ବୋଲି କୁହାଯାଇଛି—

**ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ ।***

(ମୁଣ୍ଡକ. ୩ । ୧ । ୧, ଶ୍ୱେତାଶ୍ୱତର. ୪ । ୬)

‘‘ସର୍ବଦା ସାଥୀ ହୋଇ ରହୁଥିବା ଏବଂ ପରସ୍ପର ସଖାଭାବ ରଖୁଥିବା ଜୀବାତ୍ମା ଓ ପରମାତ୍ମା ନାମକ ଦୁଇଟି ପକ୍ଷୀ ଶରୀରରୂପୀ ଗୋଟିଏ ବୃକ୍ଷର ଆଶ୍ରୟରେ ରହନ୍ତି ।’’

ଯିଏ ନିଜେ ବଡ଼, ସେ ଅନ୍ୟମାନଙ୍କୁ ମଧ୍ୟ ବଡ଼ କରେ । ଯିଏ ଅନ୍ୟମାନଙ୍କୁ ଛୋଟ କରେ, ସେ ନିଜେ ଛୋଟ । ଯିଏ ପ୍ରକୃତରେ ବଡ଼, ତାକୁ ନିମ୍ନ ସ୍ତରର କାର୍ଯ୍ୟ କରିବାକୁ ମଧ୍ୟ ଲଜ୍ଜା ବୋଧ ହୁଏ ନାହିଁ । କ୍ଷତ୍ରିୟମାନଙ୍କ ମେଳରେ, ଅଠର ଅକ୍ଷୌହିଣୀ ସେନାରେ ଭଗବାନ ସାରଥି ହୋଇ ରଥ ଚାଳନା କଲେ । ଅର୍ଜୁନ ଦୁଇ ସେନାଙ୍କ ମଧ୍ୟଭାଗରେ ତାଙ୍କର ରଥ ଠିଆ କରିବାକୁ କହିବାରୁ ଭଗବାନ ଶିଷ୍ୟଭଳି ତାଙ୍କର ଆଜ୍ଞା ପାଳନ କଲେ । ସେହିପରି ପାଣ୍ଡବମାନେ ଯଜ୍ଞରେ ସର୍ବପ୍ରଥମେ ଭଗବାନ ଶ୍ରୀକୃଷ୍ଣଙ୍କୁ ପୂଜା କଲେ । କିନ୍ତୁ ସେହି ଯଜ୍ଞରେ ଭଗବାନ ବ୍ରାହ୍ମଣମାନଙ୍କ ଅଇଁଠା ପତ୍ର ଉଠାଇବା କାର୍ଯ୍ୟ ସମ୍ପାଦନ କଲେ । ନିମ୍ନସ୍ତରର କାର୍ଯ୍ୟ କରିବାରେ ଭଗବାନଙ୍କୁ ଲଜ୍ଜା ବୋଧ ହେଲା ନାହିଁ । ଯିଏ ନିଜେ ଛୋଟ, ତାକୁ ହିଁ ଲଜ୍ଜା ବୋଧ ହୁଏ ଏବଂ ତା’ମନରେ ହିଁ ଭୟ ଥାଏ ଯେ କାଳେ କିଏ ତାକୁ ଛୋଟ ବୋଲି ବୁଝିନେବ! କାଳେ କେହି ତାକୁ ଅପମାନିତ କରିଦେବ!

❑❑❑

---

* ସୁପର୍ଣ୍ଣାବେତୌ ସଦୃଶୌ ସଖାୟୌ ଯଦୃଚ୍ଛୟୈତୌ କୃତନୀଡୌ ଚ ବୃକ୍ଷେ ।

(ଶ୍ରୀମଭା. ୧୧ । ୧୧ । ୬)

# ଗୁରୁଙ୍କ ମହିମା

ବାସ୍ତବରେ ଗୁରୁଙ୍କ ମହିମା କେହି କେବେହେଲେ ପୂର୍ଣ୍ଣରୂପେ ବର୍ଣ୍ଣନା କରି ପାରିବେ ନାହିଁ। ଗୁରୁଙ୍କ ମହିମା ଭଗବାନଙ୍କ ଠାରୁ ମଧ୍ୟ ଅଧିକ। ତେଣୁ ଶାସ୍ତ୍ରମାନଙ୍କରେ ବିଶେଷଭାବେ ଗୁରୁଙ୍କର ମହିମା ଗାନ କରାଯାଇଛି। ମାତ୍ର ସେହି ମହିମା ସତ୍ୟତା ଓ ବାସ୍ତବିକତାର, ଦମ୍ଭ ଓ ଭଣ୍ଡାମିର ନୁହେଁ। ଆଜିକାଲି ଦମ୍ଭ ଓ ଭଣ୍ଡାମି ବହୁତ ବଢ଼ିଗଲାଣି ଏବଂ ବେଳକୁ ବେଳ ଆହୁରି ଅଧିକ ବଢ଼ି ବଢ଼ି ଚାଲିଛି। କିଏ ଭଲ ଆଉ କିଏ ମନ୍ଦ—ଏହା ଶୀଘ୍ର ଓ ସହଜରେ ଜଣା ପଡୁ ନାହିଁ। ଯେଉଁ ମନ୍ଦ ମନ୍ଦ ରୂପ ଧାରଣ କରି ଆସେ, ତାହାକୁ ଦୂର କରିବା ସହଜ। କିନ୍ତୁ ଯେଉଁ ମନ୍ଦ ଭଲ ରୂପ ଧାରଣ କରି ଆସେ, ତାହାକୁ ଦୂର କରିବା ବଡ଼ କଠିନ। ସୀତାଙ୍କ ନିକଟକୁ ରାବଣ, ରାଜା ପ୍ରତାପଭାନୁଙ୍କ ନିକଟକୁ ଛଦ୍ମବେଶୀ ମୁନି ଏବଂ ହନୁମାନଙ୍କ ନିକଟକୁ କାଳନେମି ସାଧୁ ବେଶ ଧରି ଆସିବାରୁ ସେମାନଙ୍କୁ ଏମାନେ ଚିହ୍ନି ନ ପାରି ସେମାନଙ୍କ ଫାନ୍ଦରେ ପଡ଼ିଗଲେ। ଆଜିକାଲି ମଧ୍ୟ ଶିଷ୍ୟମାନଙ୍କର ଗୁରୁଙ୍କ ପ୍ରତି ଯେପରି ଶ୍ରଦ୍ଧା ଥିବାର ଦେଖାଯାଏ, ଗୁରୁ ନିଜେ ସେପରି ହୋଇ ନ ଥାନ୍ତି। ତେଣୁ ପୂଜ୍ୟ ଶେଠଜୀ ଶ୍ରୀ ଜୟଦୟାଲ ଗୋୟନ୍ଦକା କହୁଥିଲେ, "ଆଜିକାଲିର ଗୁରୁମାନଙ୍କ ପ୍ରତି ଆମର ଶ୍ରଦ୍ଧା ହେଉ ନାହିଁ, କିନ୍ତୁ ସେମାନଙ୍କ ଚେଲାମାନଙ୍କ ପ୍ରତି ଶ୍ରଦ୍ଧା ହେଉଛି! ଏହାର କାରଣ, ଚେଲାମାନଙ୍କର ଗୁରୁଙ୍କ ପ୍ରତି ରହିଥିବା ଶ୍ରଦ୍ଧାଭାବ ଅତି ଆଦରଣୀୟ।"

ଶାସ୍ତ୍ରରେ ବର୍ଣ୍ଣିତ ଗୁରୁଙ୍କର ମହିମା ସତ୍ୟ ହୋଇଥିଲେ ମଧ୍ୟ ବର୍ତ୍ତମାନ ସମୟରେ ତାହା ପ୍ରଚାରର ଯୋଗ୍ୟ ନୁହେଁ। କାରଣ ଆଜିକାଲିର ଦାମ୍ଭିକ ଓ ପାଷଣ୍ଡ ଲୋକେ ଗୁରୁଙ୍କ ମହିମାର ଆଶ୍ରୟ ନେଇ ନିଜର ସ୍ୱାର୍ଥ ସିଦ୍ଧ କରିବାରେ ବ୍ୟସ୍ତ। ଏଥିରେ କଳିଯୁଗ ମଧ୍ୟ ସହାୟକ ହେଉଛି; କାରଣ କଳିଯୁଗ ହେଉଛି ଅଧର୍ମର ମିତ୍ର—**'କଳିନାଧର୍ମମିତ୍ରେଣ'** (ପଦ୍ମପୁରାଣ, ଉତ୍ତର. ୧୯୩।୩୧)। ବାସ୍ତବରେ ଗୁରୁଙ୍କ ମହିମା ପ୍ରଚାର କରିବା ପାଇଁ ଉଦ୍ଦିଷ୍ଟ ନୁହେଁ, ବରଂ ତାହା ଧାରଣ କରିବା ପାଇଁ ଉଦ୍ଦିଷ୍ଟ। କୌଣସି ଗୁରୁ ନିଜେ ଯଦି ଗୁରୁମହିମା କହି ବୁଲନ୍ତି, ଗୁରୁମହିମା ବର୍ଣ୍ଣିତ ପୁସ୍ତକମାନ ପ୍ରଚାର କରନ୍ତି, ତେବେ ଏଥିରୁ ସ୍ପଷ୍ଟ ହେଉଛି ଯେ ତାଙ୍କ ମନରେ ଗୁରୁ ହେବାର ଇଚ୍ଛା ରହିଛି। ଯାହା ମନରେ ଗୁରୁ ହେବାର ଇଚ୍ଛା ରହିଛି, ତା'ଦ୍ୱାରା କଦାପି ଅନ୍ୟମାନଙ୍କର ମଙ୍ଗଳ ହୋଇ ପାରିବ ନାହିଁ। ମୁଁ ଗୁରୁ କରିବା ପାଇଁ ମନା କରୁ ନାହିଁ, ମୁଁ କେବଳ ଭଣ୍ଡାମିର ବିରୋଧ କରୁଛି। ଗୁରୁ କରିବା ପାଇଁ କେହି ବାରଣ କରି ପାରିବ ନାହିଁ।

ବାସ୍ତବରେ ଶିଷ୍ୟଙ୍କ ଦୃଷ୍ଟିକୋଣରୁ ହିଁ ଗୁରୁଙ୍କର ମହିମା ପ୍ରତିପାଦିତ ହୁଏ, ଗୁରୁଙ୍କ ଦୃଷ୍ଟିକୋଣରୁ ନୁହେଁ। ଗୁରୁଙ୍କ ଦୃଷ୍ଟିକୋଣ ଅଲଗା, ଶିଷ୍ୟର ଦୃଷ୍ଟିକୋଣ ଅଲଗା ଏବଂ ଅନ୍ୟ ବ୍ୟକ୍ତିର ଦୃଷ୍ଟିକୋଣ ଅଲଗା। ଗୁରୁ ତାଙ୍କ ଦୃଷ୍ଟିକୋଣ ଅନୁସାରେ ଭାବନ୍ତି ଯେ "ମୁଁ କିଛି ଦେଇ ନାହିଁ, ବରଂ ଯେଉଁ ବାସ୍ତବ ତତ୍ତ୍ୱ ସ୍ୱତଃ ସ୍ୱାଭାବିକଭାବେ ବିଦ୍ୟମାନ, ସେ ଦିଗକୁ କେବଳ ଶିଷ୍ୟର ଦୃଷ୍ଟି ଆକର୍ଷିତ କରାଇ ଦେଇଛି। ତାକୁ କେବଳ ତା'ସ୍ୱରୂପର ବୋଧ କରାଇ ଦେଇଛି, ନିଜ ପାଖରୁ କିଛି ଦେଇ ନାହିଁ।" ଶିଷ୍ୟ ତା'ଦୃଷ୍ଟିକୋଣରୁ ଭାବେ "ଗୁରୁ ମୋତେ ସବୁକିଛି ଦେଲେ, ଯାହା କିଛି ହୋଇଛି, ଗୁରୁକୃପାରୁ ହିଁ ହୋଇଛି।" ଅନ୍ୟ ଲୋକ

ତା'ଦୃଷ୍ଟିକୋଣରୁ ଭାବେ ଯେ ଶିଷ୍ୟର ଶ୍ରଦ୍ଧା ଥିବାରୁ ତାକୁ ତତ୍ତ୍ୱବୋଧ ହେଲା ।

ପ୍ରକୃତ ମହିମା ହେଉଛି ସେହି ଗୁରୁଙ୍କର, ଯିଏ ଗୋବିନ୍ଦଙ୍କ ସହିତ ସାକ୍ଷାତ କରାଇ ଦିଅନ୍ତି । ଯେ ଗୋବିନ୍ଦଙ୍କ ସହିତ ସାକ୍ଷାତ ନ କରାଇ, କେବଳ ଗୁଡ଼ାଏ ଫମ୍ପା କଥା କହନ୍ତି, ସେ କେବେହେଲେ ଗୁରୁ ନୁହନ୍ତି । ଏପରି ଗୁରୁଙ୍କର ମହିମା ଅସତ୍ୟ ଏବଂ ଏହା କେବଳ ଲୋକମାନଙ୍କୁ ପ୍ରତାରିତ କରିବା ପାଇଁ ଉଦ୍ଦିଷ୍ଟ ।

□□□

# ଗୁରୁକୃପା

ଗୁରୁକୃପା ଅଥବା ସନ୍ଥକୃପାର ମାହାତ୍ମ୍ୟ ଅପାର । ଭଗବାନଙ୍କ କୃପାରୁ ଜୀବକୁ ମାନବଶରୀର ମିଳେ ଏବଂ ଗୁରୁଙ୍କ କୃପାରୁ ଭଗବାନ ମିଳନ୍ତି । ଲୋକେ ଭାବନ୍ତି ଯେ, ଆମେ ଗୁରୁ କଲେ ଯାଇ ସେ କୃପା କରିବେ । କିନ୍ତୁ ଏହାର କୌଣସି ଯଥାର୍ଥତା ନାହିଁ । ସମସ୍ତେ ନିଜ ନିଜର ପିଲାଛୁଆଙ୍କୁ ପାଳନ କରନ୍ତି । କୁକୁର ମଧ୍ୟ ତା' ପିଲାଛୁଆଙ୍କୁ ପାଳନ କରେ । ମାତ୍ର ସନ୍ଥଙ୍କ କୃପା ଅତ୍ୟନ୍ତ ବିଲକ୍ଷଣ! କେହି ଶିଷ୍ୟ ହେଉ ବା ନ ହେଉ, ତାଙ୍କ ପ୍ରତି ପ୍ରେମଭାବ ପୋଷଣ କରୁ ବା ବୈରଭାବ ରଖୁ, ସନ୍ଥମହାତ୍ମା ସେଥିପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । ଦୀନଦୁଃଖୀଙ୍କୁ ଦେଖି ସନ୍ଥମହାତ୍ମାଙ୍କ ହୃଦୟ ଦ୍ରବିତ ହୋଇଯାଏ, ଏବଂ ଏତିକିରେ ସେମାନଙ୍କ ଦୁଃଖ ଦୂର ହୋଇଯାଏ ।* ଜଗାଇ ଓ ମାଧାଇ ଅତ୍ୟନ୍ତ ପାପୀ ଥିଲେ ଏବଂ ସାଧୁମାନଙ୍କ ପ୍ରତି ଶତ୍ରୁତା ରଖୁଥିଲେ, ତଥାପି ଚୈତନ୍ୟ ମହାପ୍ରଭୁ ସେମାନଙ୍କ ଉପରେ କୃପା କଲେ ଓ ସେମାନଙ୍କୁ ଉଦ୍ଧାର କରିଦେଲେ ।

ସନ୍ଥମହାତ୍ମା ସମସ୍ତଙ୍କ ଉପରେ କୃପା କରନ୍ତି; କିନ୍ତୁ ତୃଷାର୍ତ୍ତ ଯେପରି ଜଳକୁ ଗ୍ରହଣ କରେ, ସେହିପରି ପରମାତ୍ମତତ୍ତ୍ୱର ଜିଜ୍ଞାସୁ ହିଁ ସେହି କୃପାକୁ ଗ୍ରହଣ କରେ । ବାସ୍ତବରେ ଉଦ୍ଧାର ପାଇଁ ଜିଜ୍ଞାସୁର ନିଷ୍ଠା ଯେତେ ତୀବ୍ର ହୁଏ, ସତ୍ୟତତ୍ତ୍ୱକୁ ଜାଣିବାର ଇଚ୍ଛା ଯେତେ ଅଧିକ ହୁଏ, ସେହି ପରିମାଣରେ ହିଁ ସେ ସେହି ସନ୍ଥକୃପାକୁ ଗ୍ରହଣ କରେ । ପ୍ରକୃତ ଜିଜ୍ଞାସୁଙ୍କ ପ୍ରତି ସନ୍ଥ ବା ଗୁରୁଙ୍କର କୃପା ଆପେ ଆପେ ହୋଇଥାଏ ।

---

* ଗୋଟିଏ ହେଉଛି ଦୟା ଏବଂ ଅନ୍ୟଟି ହେଉଛି କୃପା । ଦୟାରେ କୋମଳଭାବ ଥାଏ ଏବଂ କୃପାରେ ଅଳ୍ପ ଶାସନଭାବ ଥାଏ । ଦୟାରେ ଶାସନ ହୋଇପାରେ ନାହିଁ, ବରଂ ହୃଦୟ ଦ୍ରବିତ ହୋଇଯାଏ । ହୃଦୟ ଦ୍ରବିତ ହେଲେ ଶିଷ୍ୟର କାର୍ଯ୍ୟ ସଫଳ ହୋଇଯାଏ ।

ଗୁରୁଙ୍କର କୃପା ହୋଇଗଲେ ଆଉ କିଛି ବାକି ରହେ ନାହିଁ । ମାତ୍ର ଏପରି ଗୁରୁ ମିଳିବା ଅତ୍ୟନ୍ତ ଦୁର୍ଲଭ!

ପରଶମଣି ସଂସ୍ପର୍ଶରେ ଲୁହା ସୁନାରେ ପରିଣତ ହୋଇଯାଏ, କିନ୍ତୁ ପରିଣତ ହୋଇଥିବା ସେହି ସୁନାରେ ଅନ୍ୟ ଲୁହାକୁ ସୁନା କରିଦେବା ଭଳି ଶକ୍ତି ନ ଥାଏ । ମାତ୍ର ପ୍ରକୃତ ଗୁରୁ ମିଳିଗଲେ ତାଙ୍କ କୃପାରୁ ଶିଷ୍ୟ ମଧ୍ୟ ଗୁରୁ ହୋଇଯାଏ, ମହାତ୍ମା ହୋଇଯାଏ ।

**ପାରସ ମେଁ ଅରୁ ସଂତ ମେଁ, ବହୁତ ଅଂତରୌ ଜାନ ।**

**ୱହ ଲୋହା କଂଚନ କରେ, ୱହ କରୈ ଆପୁ ସମାନ ।।**

[ଅର୍ଥ—ପରଶମଣି ଓ ସନ୍ଥଙ୍କ ଭିତରେ ଅନେକ ତଫାତ୍ । ପରଶମଣି ଲୁହାକୁ ନିଜଭଳି ନ କରି ସୁନାରେ ପରିଣତ କରେ, କିନ୍ତୁ ସନ୍ଥମାନେ (ଶିଷ୍ୟକୁ) ନିଜଭଳି କରି ଦିଅନ୍ତି ।]

ଗୁରୁକୃପାର ଏହା ହିଁ ବିଶେଷତ୍ୱ! ଚାରୋଟି ଉପାୟରେ ଏହି ଗୁରୁକୃପା ଲାଭ ହୁଏ—ସ୍ମରଣ ଦ୍ୱାରା, ଦୃଷ୍ଟି ଦ୍ୱାରା, ଶବ୍ଦ ଦ୍ୱାରା ଓ ସ୍ପର୍ଶ ଦ୍ୱାରା । କଇଁଛ ବାଲି ଭିତରେ ଅଣ୍ଡା ଦେଇ ନିଜେ ପାଣି ଭିତରେ ରହି ସେହି ଅଣ୍ଡାକୁ ସ୍ମରଣ କରିବାରୁ ଯେପରି ଅଣ୍ଡା ଫୁଟିଯାଏ, ସେହିପରି ଗୁରୁ ସ୍ମରଣ କରିବା ମାତ୍ରେ ଶିଷ୍ୟକୁ ଜ୍ଞାନଲାଭ ହୁଏ—ଏହା ହେଉଛି 'ସ୍ମରଣଦୀକ୍ଷା' । ମାଛ ପାଣି ଭିତରେ ନିଜର ଅଣ୍ଡାକୁ ଥରକୁ ଥର ଦେଖୁଥିବାରୁ ଅଣ୍ଡା ଯେପରି ଫୁଟିଯାଏ, ଗୁରୁଙ୍କ କୃପାଦୃଷ୍ଟି ଦ୍ୱାରା ଶିଷ୍ୟକୁ ସେହିପରି ଜ୍ଞାନଲାଭ ହୁଏ—ଏହା ହେଉଛି 'ଦୃଷ୍ଟିଦୀକ୍ଷା' । କୁରରୀ ପକ୍ଷୀ ପୃଥିବୀ ପୃଷ୍ଠରେ ଅଣ୍ଡା ଦେଇ ଆକାଶରେ ବୋବେଇ ବୋବେଇ ବୁଲିବା ଦ୍ୱାରା ଯେପରି ସେହି ଶବ୍ଦ ବଳରେ ଅଣ୍ଡା ଫୁଟିଯାଏ, ଗୁରୁ ସେହିପରି ନିଜର ଶବ୍ଦ ଶକ୍ତି ବଳରେ ଶିଷ୍ୟକୁ ଜ୍ଞାନଲାଭ କରାଇ ଦିଅନ୍ତି—ଏହା ହେଉଛି 'ଶବ୍ଦଦୀକ୍ଷା' । ମୟୂରୀ ନିଜର ଅଣ୍ଡା ଉପରେ ବସି ରହିବା ଫଳରେ ଯେପରି ଅଣ୍ଡା ଫୁଟିଯାଏ, ଗୁରୁଙ୍କ ହସ୍ତସ୍ପର୍ଶରେ ଶିଷ୍ୟକୁ ସେହିପରି ଜ୍ଞାନଲାଭ ହୁଏ—ଏହା ହେଉଛି 'ସ୍ପର୍ଶଦୀକ୍ଷା' ।

ଈଶ୍ୱରଙ୍କ କୃପାରୁ ମାନବଶରୀର ମିଳିଛି । ଏହା ପାଇ ଜୀବ ସ୍ୱର୍ଗକୁ ଅଥବା ନରକକୁ ମଧ୍ୟ ଯାଇପାରେ ଏବଂ ମୁକ୍ତ ମଧ୍ୟ ହୋଇପାରେ । ମାତ୍ର ଗୁରୁଙ୍କର ବା ସନ୍ଥଙ୍କର କୃପା ହେଲେ ମନୁଷ୍ୟକୁ ସ୍ୱର୍ଗ ଅଥବା ନରକ ମିଳେ ନାହିଁ, କେବଳ ମୁକ୍ତି ହିଁ ମିଳେ । ଗୁରୁ କଲେ ଯାଇ ଯେ ଗୁରୁକୃପା ଲାଭ ହୁଏ, ସେ କଥା ନୁହେଁ । ନକଲି ଗୁରୁ ଦ୍ୱାରା କଲ୍ୟାଣ ହୁଏ ନାହିଁ । ପ୍ରକୃତ ସନ୍ଥମହାତ୍ମା କାହାକୁ ଶିଷ୍ୟ କଲେ ଯେ ତା'ର କଲ୍ୟାଣ କରନ୍ତି, ତା'ନୁହେଁ । ସେ ସ୍ୱତଃ ଓ ସ୍ୱାଭାବିକଭାବରେ କୃପା କରନ୍ତି । ସୂର୍ଯ୍ୟଙ୍କୁ କେହି ଇଷ୍ଟ ମନେକଲେ ଯେ ସେ ଆଲୋକିତ କରିବେ, ସେ କଥା ନୁହେଁ । ସୂର୍ଯ୍ୟ ତ ସ୍ୱତଃ ଓ ସ୍ୱାଭାବିକଭାବରେ ଆଲୋକ ବିଚ୍ଛୁରିତ କରନ୍ତି, ସେହି ଆଲୋକକୁ ଯେକୌଣସି ବ୍ୟକ୍ତି କାର୍ଯ୍ୟରେ ଲଗାଇ ପାରେ । ସେହିପରି ଗୁରୁ ଓ ସନ୍ଥମହାତ୍ମାଙ୍କ କୃପା ସ୍ୱାଭାବିକଭାବରେ ହୁଏ । ଯେ ତାଙ୍କ ପ୍ରତି ସମ୍ମୁଖ ହୋଇଯାଏ, ସେ ଲାଭାନ୍ୱିତ ହୁଏ ଏବଂ ଯେ ସମ୍ମୁଖ ହୁଏ ନାହିଁ, ସେ ଲାଭରୁ ବଞ୍ଚିତ ରହେ । ବର୍ଷା ହେବାବେଳେ ପାତ୍ରକୁ ଉପରମୁହାଁ କରି ରଖିଲେ ସେଥିରେ ଜଳ ପୂର୍ଣ୍ଣ ହୋଇଯାଏ । କିନ୍ତୁ ପାତ୍ରଟିକୁ ଯଦି ତଳମୁହାଁ କରି ରଖାଯାଏ, ତେବେ ସେଥିରେ ଜଳ ପୂର୍ଣ୍ଣ ହୁଏ ନାହିଁ, ଭିତର ଶୁଖିଲା ରହିଯାଏ । ସେହିପରି ସନ୍ଥକୃପାକୁ ଗ୍ରହଣ କରିବାର ପାତ୍ର ଯେପରି ହୋଇଥାଏ, ସେହି ଅନୁସାରେ ତାକୁ ଲାଭ ମିଳେ ।

**ସତଗୁରୁ ଭୂଠା ଇନ୍ଦ୍ର ସମ, କଭୀ ନ ରାଖୀ କୋୟ ।**
**ୱୈସା ହୀ ଫଲ ନୀପଜୈ, ଜୈସୀ ଭୂମିକା ହୋୟ ॥**

ବର୍ଷା ସବୁ ମଞ୍ଜି ଉପରେ ସମାନଭାବରେ ବରଷେ, କିନ୍ତୁ ମଞ୍ଜି ଯେପରି ହୋଇଥାଏ, ସେହିପରି ଫଳ ଧରେ । ସେହିପରି ଭଗବାନଙ୍କର ଓ ସନ୍ଥମହାତ୍ମାଙ୍କର କୃପା ସମସ୍ତଙ୍କ ଉପରେ ସର୍ବଦା ସମାନଭାବରେ ଥାଏ । ଯେ ଯେପରି ଇଚ୍ଛା କରିବ, ସେହିପରି ଲାଭ ପାଇ ପାରିବ ।



## ଗୁରୁଙ୍କ ବଚନର ମହତ୍ତ୍ୱ

ଗୁରୁ କରିଦେଲେ କଲ୍ୟାଣ ହୁଏ ନାହିଁ, ବରଂ ଗୁରୁଙ୍କ କଥା ମାନିଲେ କଲ୍ୟାଣ ହୁଏ; କାରଣ ଶରୀର ଗୁରୁ ନୁହେଁ, ଶବ୍ଦ ହିଁ ଗୁରୁ—

**ଜୋ ତୂ ଚେଲା ଦେହ କୋ, ଦେହ ଖେହ କୀ ଖାନ ।**

**ଜୋ ତୂ ଚେଲା ସବଦ କୋ, ସବଦ ବ୍ରହ୍ମ କର ମାନ ॥**

ଗୁରୁ ଶରୀର ନୁହେଁ ଏବଂ ଶରୀର ଗୁରୁ ନୁହେଁ—**'ନ ମର୍ତ୍ତ୍ୟବୁଦ୍ଧ୍ୟାସୂୟେତ'** (ଶ୍ରୀମଭା. ୧୧ । ୧୭ । ୨୭) । ତେଣୁ ଗୁରୁ କେବେ ମରେ ନାହିଁ । ଯଦି ଗୁରୁ ମରିଯିବ, ତେବେ ଶିଷ୍ୟର କଲ୍ୟାଣ ହେବ କିପରି? ଶରୀରକୁ ତ ଅଧମ କୁହାଯାଇଛି—

**ଛିତି ଜଲ ପାଵକ ଗଗନ ସମୀରା । ପଂଚ ରଚିତ ଅତି ଅଧମ ସରୀରା ॥**

(ମାନସ, କିଷ୍କିନ୍ଧା. ୧୧ । ୨)

ଯଦି କୌଣସି ବ୍ୟକ୍ତିର ହାଡ଼ମାଂସଯୁକ୍ତ ଶରୀର ଗୁରୁ ହୁଏ, ତେବେ ସେ ଅଧମ ଓ କାଳନେମି । ତେଣୁ ଗୁରୁଙ୍କ ପ୍ରତି ଶରୀରବୁଦ୍ଧି କରିବା ଏବଂ ଶରୀର ପ୍ରତି ଗୁରୁବୁଦ୍ଧି କରିବା ଅପରାଧ । ସନ୍ଥ ଏକନାଥଙ୍କ ଚରିତ୍ରରେ ଏ କଥା ବିଶେଷଭାବରେ ପରିଲକ୍ଷିତ ହୁଏ । ଶାସ୍ତ୍ରର ପ୍ରକ୍ରିୟା ଅନୁସାରେ ପ୍ରଥମେ ତୀର୍ଥଯାତ୍ରା କରାଯାଏ, ତା'ପରେ ଉପାସନା କରାଯାଏ ଆଉ ତା'ପରେ ଜ୍ଞାନଲାଭ ହୁଏ । ମାତ୍ର ଏକନାଥଙ୍କ ଜୀବନରେ ବିପରୀତ କ୍ରମ ଦେଖିବାକୁ ମିଳେ । ତାଙ୍କୁ ପ୍ରଥମେ ଜ୍ଞାନଲାଭ ହେଲା, ତା'ପରେ ସେ ଉପାସନା କଲେ ଏବଂ ତା'ପରେ ତୀର୍ଥଯାତ୍ରା କରିବା ପାଇଁ ଗୁରୁଦେବ ତାଙ୍କୁ ଆଜ୍ଞା ଦେଲେ । ସେ ତୀର୍ଥଯାତ୍ରା କରୁଥିବା ସମୟରେ ତାଙ୍କ ଜନ୍ମସ୍ଥାନ 'ପୈଠଣ'ର ଜଣେ ବ୍ରାହ୍ମଣ 'ଦେବଗଡ଼'ରେ ତାଙ୍କ ଗୁରୁଙ୍କ ନିକଟରେ ପହଞ୍ଚି କହିଲେ,

“ଆଜ୍ଞା! ଆପଣଙ୍କ ପାଖରେ ଯେଉଁ ଏକନାଥ ଥିଲେ, ତାଙ୍କର ବୁଢ଼ାବାପା ଓ ବୁଢ଼ୀମାଆ ଏ ବୃଦ୍ଧ ବୟସରେ ଏକନାଥଙ୍କୁ ଝୁରି ଝୁରି କାନ୍ଦୁଛନ୍ତି। ଏହା ଶୁଣି ଗୁରୁଦେବ ଆଶ୍ଚର୍ଯ୍ୟାନ୍ୱିତ ହେଲେ। ସେ ଭାବିଲେ, ଏକନାଥ ଏତେ ବର୍ଷ ଧରି ମୋ ପାଖରେ ରହିଲା, ଅଥଚ ସେ ଦିନେ ବି ତା'ର ବୁଢ଼ାବାପା ଓ ବୁଢ଼ୀମାଆଙ୍କ ବିଷୟରେ କହି ନାହିଁ! ସେ ପତ୍ର ଖଣ୍ଡିଏ ଲେଖି ବ୍ରାହ୍ମଣଙ୍କୁ ଦେଲେ ଏବଂ କହିଲେ, “ଏକନାଥ ତୀର୍ଥଯାତ୍ରା କରି କରି ମୋ କହିବା ଅନୁସାରେ ଯେତେବେଳେ ପୈଠଣ ଆସିବ, ସେତେବେଳେ ତାକୁ ମୋର ଏହି ପତ୍ର ଦେବ”। ବ୍ରାହ୍ମଣ ପତ୍ର ଖଣ୍ଡିକ ନେଇ ଚାଲିଗଲେ। ତୀର୍ଥଯାତ୍ରା କରି କରି ଏକନାଥ ପୈଠଣ ଗ୍ରାମରେ ପହଞ୍ଚିଲେ। କିନ୍ତୁ ସେ ବୁଢ଼ାବାପା ଓ ବୁଢ଼ୀମାଆଙ୍କ ସହିତ ଦେଖା କରିବା ପାଇଁ ଘରକୁ ଗଲେ ନାହିଁ, ଗାଆଁ ବାହାରେ ରହିଲେ। ସେହି ବ୍ରାହ୍ମଣ ଜଣକ ଏକନାଥଙ୍କୁ ଦେଖି ଚିହ୍ନିପାରିଲେ ଏବଂ ବୁଢ଼ାବାପାଙ୍କ ହାତ ଧରି ଏକନାଥଙ୍କ ପାଖକୁ ନେଇଗଲେ। ସଂଯୋଗବଶତଃ ଏକନାଥଙ୍କ ସହିତ ରାସ୍ତାରେ ଭେଟ ହୋଇଗଲା। ବୁଢ଼ାବାପା ସ୍ନେହରେ ଏକନାଥଙ୍କୁ ଆଲିଙ୍ଗନ କଲେ ଏବଂ ଗୁରୁଦେବଙ୍କ ପତ୍ରଟିକୁ କାଢ଼ି କହିଲେ, “ଏହି ପତ୍ରଟି ତୁମର ଗୁରୁଦେବ ଦେଇଛନ୍ତି।” ଏ କଥା ଶୁଣିବାମାତ୍ରେ ଏକନାଥଙ୍କ ହୃଦୟ ଗଦ୍‌ଗଦ ହୋଇଗଲା। ସେ ଖଣ୍ଡେ ବସ୍ତ୍ର ବିଛାଇ ତା'ଉପରେ ପତ୍ରଟିକୁ ରଖିଲେ, ପରିକ୍ରମା କଲେ ଏବଂ ଦଣ୍ଡବତ୍ ପ୍ରଣାମ କରି ତା'ପରେ ପଢ଼ିଲେ। ସେଥିରେ ଲେଖା ହୋଇଥିଲା “ଏକନାଥ, ତୁମେ ସେଇଠି ରହିବ।” ଏକନାଥ ସେହି ସ୍ଥାନରେ ବସିଗଲେ। ଜୀବନ ସାରା ସେଠାରୁ ଆଉ କୁଆଡ଼େ ଗଲେ ନାହିଁ। ସେହିଠାରେ ଘର ତୋଳା ହୋଇଗଲା ଏବଂ ସତ୍ସଙ୍ଗ ଆରମ୍ଭ ହୋଇଗଲା। ବୁଢ଼ାବାପା ଓ ବୁଢ଼ୀମାଆ ସେଠାରେ ଆସି ରହିଲେ। ତା'ପରେ ଏକନାଥ ଆଉ କେବେ ଗୁରୁଙ୍କ ସହିତ ଦେଖା କରିବା ପାଇଁ ମଧ୍ୟ

ଗଲେ ନାହିଁ । ବିଗ୍ରହ କରନ୍ତୁ, ଶରୀର ଗୁରୁ, ନା ବଚନ ଗୁରୁ? ଗୁରୁଦେବଙ୍କ ଦେହାନ୍ତ ହେବାର ଜାଣି ସନ୍ତ ଏକନାଥ କହିଲେ, ''ଯଦି ଗୁରୁ ମରେ ଓ ଶିଷ୍ୟ କାନ୍ଦେ, ତେବେ ଦୁହିଙ୍କୁ କି ଜ୍ଞାନ ମିଳିଲା?'' ତାତ୍ପର୍ଯ୍ୟ ହେଲା, ଗୁରୁ କେବେ ମରନ୍ତି ନାହିଁ, କି ଶିଷ୍ୟ କେବେ କାନ୍ଦେ ନାହିଁ ।

ସନ୍ତ ଏକନାଥଙ୍କ ଚରିତ୍ରରେ ଯେପରି ଗୁରୁଭକ୍ତି ଦେଖିବାକୁ ମିଳେ, ଅନ୍ୟ କୌଣସି ସନ୍ତଙ୍କ ଚରିତ୍ରରେ ସେପରି ଦେଖିବାକୁ ମିଳେ ନାହିଁ । ସେ ମରାଠୀଭାଷାରେ ଶ୍ରୀମଦ୍ଭାଗବତ ଏକାଦଶ ସ୍କନ୍ଧର ଟୀକା ଲେଖିଛନ୍ତି ଏବଂ ସେଥିରେ ପ୍ରତ୍ୟେକ ଅଧ୍ୟାୟ ଆରମ୍ଭରେ ସେ ବିସ୍ତାରଭାବେ ଗୁରୁଦେବଙ୍କୁ ସ୍ତୁତି କରିଛନ୍ତି । ଏପରି ପରମ ଗୁରୁଭକ୍ତ ସନ୍ତ ଶ୍ରୀଏକନାଥ ମଧ୍ୟ ଗୁରୁଙ୍କ ଠାରୁ ଗୁରୁଙ୍କ ବଚନ(ଆଜ୍ଞା)କୁ ଅଧିକ ମହତ୍ତ୍ୱ ଦେଲେ ।

ଭଗବାନଙ୍କ ମାଧ୍ୟମରେ ପାଞ୍ଚଟି ଉପାୟରେ ବ୍ୟକ୍ତି ଲାଭାନ୍ୱିତ ହୋଇପାରେ—ନାମଜପ, ଧ୍ୟାନ, ସେବା, ଆଜ୍ଞାପାଳନ ଓ ସଙ୍ଗ । କିନ୍ତୁ ସନ୍ତମହାତ୍ମାଙ୍କ ମାଧ୍ୟମରେ ବ୍ୟକ୍ତି ତିନୋଟି ଉପାୟରେ ଲାଭାନ୍ୱିତ ହୋଇପାରେ—ସେବା, ଆଜ୍ଞାପାଳନ ଓ ସଙ୍ଗ । ତେଣୁ ଗୁରୁଙ୍କର ନାମଜପ ଓ ଧ୍ୟାନ ନ କରି ତାଙ୍କର ଆଜ୍ଞା ଓ ସିଦ୍ଧାନ୍ତ ପାଳନ କରିବା ଉଚିତ । ଗୁରୁଙ୍କ ସିଦ୍ଧାନ୍ତ ଅନୁସାରେ ନିଜର ଜୀବନ ଗଠନ କରିବା ହିଁ ପ୍ରକୃତ ଗୁରୁପୂଜନ ଓ ପ୍ରକୃତ ଗୁରୁସେବା । କାରଣ ସନ୍ତମହାତ୍ମାଙ୍କୁ ତାଙ୍କ ନିଜ ଶରୀରଠାରୁ ମଧ୍ୟ ସିଦ୍ଧାନ୍ତ ଅଧିକ ପ୍ରିୟ ହୋଇଥାଏ । ସିଦ୍ଧାନ୍ତର ରକ୍ଷା ପାଇଁ ସେ ପ୍ରାଣ ବିସର୍ଜନ କରି ପାରନ୍ତି, କିନ୍ତୁ ସିଦ୍ଧାନ୍ତ ପରିତ୍ୟାଗ କରନ୍ତି ନାହିଁ ।

ଶରୀର ଗୁରୁ ନୁହେଁ, ତତ୍ତ୍ୱ ହିଁ ଗୁରୁ । ତେଣୁ ପ୍ରକୃତ ଗୁରୁ ନିଜର ପୂଜନ ଓ ଧ୍ୟାନ କରାନ୍ତି ନାହିଁ, ବରଂ ଭଗବାନଙ୍କର ପୂଜନ ଓ ଧ୍ୟାନ

କରିବା ପାଇଁ ପ୍ରେରଣା ଦିଅନ୍ତି । ପ୍ରକୃତ ସନ୍ଥ ନିଜର ଆଜ୍ଞା ମଧ୍ୟ ପାଳନ କରାନ୍ତି ନାହିଁ, ବରଂ ସେ କହନ୍ତି ଯେ ଗୀତା, ରାମାୟଣ ପ୍ରଭୃତି ଗ୍ରନ୍ଥମାନଙ୍କର ଆଜ୍ଞା ପାଳନ କର । ଯେଉଁ ଗୁରୁ ନିଜ ଚିତ୍ରପଟର ପୂଜା କରାନ୍ତି, ତାହାକୁ ଲକେଟ୍ କରି ବେକରେ ପିନ୍ଧିବାକୁ କହନ୍ତି, ସେହି ଚିତ୍ରପଟର ପୂଜା ଓ ଧ୍ୟାନ କରିବାକୁ କହନ୍ତି, ସେ ଅବଶ୍ୟ ବିଶ୍ୱାସଘାତକ ଅଟନ୍ତି । ଭଗବାନଙ୍କର ଚିନ୍ମୟ ପବିତ୍ର ଶରୀର କେଉଁଠି ଏବଂ ହାଡ଼ମାଂସର ଜଡ଼ ଅପବିତ୍ର ଶରୀର କେଉଁଠି! ଭଗବାନଙ୍କ ପୂଜା ସ୍ଥାନରେ ହାଡ଼ମାଂସର ପ୍ରତିମୂର୍ତ୍ତିକୁ ପୂଜା କରିବା ସବୁଠୁ ବଡ଼ ଦୋଷ । ରାଜାଙ୍କ ସହିତ ଶତ୍ରୁତା ରଖୁଥିବା, ତାଙ୍କର ବିରୁଦ୍ଧ ଆଚରଣ କରୁଥିବା ମନୁଷ୍ୟ ଯେପରି ରାଜଦ୍ରୋହୀ ଅଟେ, ନିଜର ପୂଜା କରାଉଥିବା ମନୁଷ୍ୟ ସେହିପରି ଭଗବଦ୍‌ଦ୍ରୋହୀ ଅଟେ । ଗୀତାପ୍ରେସର ସଂସ୍ଥାପକ, ସଂଚାଳକ ଓ ସଂରକ୍ଷକ ଶ୍ରୀଜୟଦୟାଲ ଗୋୟନ୍ଦକାଙ୍କୁ ଜଣେ ସଜ୍ଜନ କହିଲେ ଯେ, ଆମେ ଆପଣଙ୍କର ଫଟୋ ନେବାକୁ ଚାହୁଁଛୁ । ଏହା ଶୁଣି ସେ କହିଲେ, ‘‘ଆଗ ତୁମେ ତୁମର ଚପଲକୁ ମୋ ମୁଣ୍ଡରେ ବାନ୍ଧିଦିଅ, ତା'ପରେ ଫଟୋ ନିଅ! ନିଜର ପୂଜା କରାଇବାକୁ ମୁଁ ଚପଲ ମାଡ଼ ବୋଲି ମନେ କରୁଛି ।’’ ଥରେ ଶ୍ରୀଜୟଦୟାଲଜୀ କୌଣସି ସନ୍ଥଙ୍କୁ ପଚାରିଲେ, ଆପଣ ପୁସ୍ତକମାନଙ୍କରେ ନିଜର ଯେଉଁ ଚିତ୍ର ଛାପୁଛନ୍ତି, ନିଜର ନାମ, ଚିତ୍ରପଟ ଆଦିର ପ୍ରଚାର କରୁଛନ୍ତି, ତା'ଦ୍ୱାରା ଆପଣଙ୍କର ମଙ୍ଗଳ ହେଉଛି, ନା ଶିଷ୍ୟମାନଙ୍କର ମଙ୍ଗଳ ହେଉଛି, ନା ସଂସାରର ମଙ୍ଗଳ ହେଉଛି? କାହାର ମଙ୍ଗଳ ହେଉଛି କୁହନ୍ତୁ ତ ! ଏହି ପ୍ରଶ୍ନର କୌଣସି ଉତ୍ତର ଦେବା ପାଇଁ ସେ ସକ୍ଷମ ହେଲେ ନାହିଁ ।

□□□

# ଗୁରୁ ହେବାର ଅଧିକାରୀ କିଏ?

ଗୁରୁଙ୍କ ମହିମା ଗୋବିନ୍ଦଙ୍କ ଠାରୁ ମଧ୍ୟ ଅଧିକ ବୋଲି କଥିତ ଅଛି। କିନ୍ତୁ ଶିଷ୍ୟର ଉଦ୍ଧାର କରି ପାରୁଥିବା ଗୁରୁଙ୍କର ହିଁ ଏପରି ମହିମା। ଶ୍ରୀମଦ୍ଭାଗବତରେ ଅଛି—

**ଗୁରୁର୍ନ ସ ସ୍ୟାତ୍‌ସ୍ୱଜନୋ ନ ସ ସ୍ୟାତ୍**
**ପିତା ନ ସ ସ୍ୟାଜ୍ଜନନୀ ନ ସା ସ୍ୟାତ୍**
**ଦୈବଂ ନ ତତ୍‌ସ୍ୟାନ୍ନ ପତିଶ୍ଚ ସ ସ୍ୟା-**
**ନ୍ନ ମୋଚୟେଦ୍ ଯଃ ସମୁପେତମୃତ୍ୟୁମ୍ ।।**

(ଶ୍ରୀମଭା. ୫।୫।୧୮)

''ଯିଏ ଆସନ୍ନ ମୃତ୍ୟୁରୁ ରକ୍ଷା ନ କରେ, ସେହି ଗୁରୁ ଗୁରୁ ନୁହେଁ, ସ୍ୱଜନ ସ୍ୱଜନ ନୁହେଁ, ପିତା ପିତା ନୁହେଁ, ମାତା ମାତା ନୁହେଁ, ଇଷ୍ଟଦେବ ଇଷ୍ଟଦେବ ନୁହେଁ ଏବଂ ପତି ପତି ନୁହେଁ।''

ତେଣୁ ସନ୍ଥଙ୍କ ବାଣୀରେ ଅଛି—

**ଚୌଥେ ପଦ ଚୀନ୍‌ହେ ବିନା ଶିଷ୍ୟ କରୋ ମତ କୋୟ।**

ଏହାର ତାତ୍ପର୍ଯ୍ୟ—ଯେପର୍ଯ୍ୟନ୍ତ ଶିଷ୍ୟକୁ ଉଦ୍ଧାର କରିବାର ଶକ୍ତି ନିଜଠାରେ ଆସି ନାହିଁ, ସେପର୍ଯ୍ୟନ୍ତ ନିଜେ ଗୁରୁ ହୁଅ ନାହିଁ। କାରଣ ଗୁରୁ ହୋଇ ଶିଷ୍ୟର ଉଦ୍ଧାର କରି ନ ପାରିଲେ ଅଧିକ ଦୋଷ ଲାଗେ—

**ହରଇ ସିଷ୍ୟ ଧନ ସୋକ ନ ହରଈ। ସୋ ଗୁରୁ ଘୋର ନରକ ମହୁଁ ପରଈ।।**

(ମାନସ, ଉତ୍ତର. ୯୯।୪)

[ଅର୍ଥ—ଯେଉଁ ଗୁରୁ କେବଳ ଶିଷ୍ୟର ଧନ ହରଣ କରେ, ଶୋକ ହରଣ କରେ ନାହିଁ, ସେ ଘୋର ନରକରେ ପଡ଼େ।]

ଘୋର ନରକରେ ପଡ଼ିବାର କାରଣ ହେଲା, ମନୁଷ୍ୟ ଅନ୍ୟ କେଉଁଠିକି ଯାଇ ନିଜର କଲ୍ୟାଣ କରି ପାରି ଥାଆନ୍ତା, କିନ୍ତୁ ଗୁରୁ ତାକୁ

ନିଜର ଶିଷ୍ୟ କରି ଗୋଟିଏ ସ୍ଥାନରେ ବାନ୍ଧିଦେଲେ । ତାକୁ ଆତ୍ମକଲ୍ୟାଣ କରିବା ପାଇଁ ଯେଉଁ ମନୁଷ୍ୟଶରୀର ମିଳିଥିଲା, ସେଥିରେ ସେ ପ୍ରତିବନ୍ଧକ ସୃଷ୍ଟି କଲେ! ଧରିନିଅ—କାହା ଘରକୁ କୁକୁର ପଶି ଆସିଲା ଏବଂ ଘରର ମାଲିକ କବାଟ ବନ୍ଦ କରିଦେଲା । ଘରେ କିଛି ଖାଇବା ଜିନିଷ ନ ଥିଲା । ଏପରି ସ୍ଥିତିରେ ସେହି କୁକୁର ସେଠାରେ ତ କିଛି ଖାଇବାକୁ ପାଇବ ନାହିଁ, ତା'ଛଡ଼ା ଅନ୍ୟ କୁଆଡ଼େ ବି ଯାଇ ପାରିବ ନାହିଁ । ଆଜିକାଲି ଶିଷ୍ୟମାନଙ୍କ ଦଶା ଠିକ୍ ଏହିପରି । ଗୁରୁ ନିଜେ ତ ଶିଷ୍ୟର କଲ୍ୟାଣ କରି ପାରୁ ନାହାନ୍ତି ଏବଂ ଅନ୍ୟ କେଉଁଠିକି ଯିବାକୁ ସୁଯୋଗ ମଧ୍ୟ ଦେଉ ନାହାନ୍ତି । ଶିଷ୍ୟ ଯଦି କେଉଁଠିକି ଚ୍ଳିଯାଏ, ସେ ତାକୁ ଧମକ ଦିଅନ୍ତି ଯେ, ମୋର ଶିଷ୍ୟ ହୋଇ ତୁ ଅନ୍ୟମାନଙ୍କ ନିକଟକୁ ଯାଉଛୁ! ସନ୍ଥ କରପାତ୍ରଜୀ ମହାରାଜ କହୁଥିଲେ, "ଯେଉଁ ଗୁରୁ କେବଳ ଶିଷ୍ୟ କରିଦିଏ, ଶିଷ୍ୟର ଉଦ୍ଧାର କରେ ନାହିଁ, ପରଜନ୍ମରେ ସେ କୁକୁର ହୁଏ ଏବଂ ଶିଷ୍ୟମାନେ ଟିଙ୍କ ହୋଇ ତା'ର ରକ୍ତ ପିଅନ୍ତି!"

**ମନ୍ତ୍ରିଦୋଷଶ୍ଚ ରାଜାନଂ ଜାୟାଦୋଷଃ ପତିଂ ଯଥା ।**
**ତଥା ପ୍ରାପ୍ନୋତ୍ୟସନ୍ଦେହଂ ଶିଷ୍ୟପାପଂ ଗୁରୁଂ ପ୍ରିୟେ ।।**

(କୁଳାର୍ଣ୍ଣବତନ୍ତ୍ର)

"ଯେପରି ମନ୍ତ୍ରୀର ଦୋଷ ରାଜାକୁ ଏବଂ ପତ୍ନୀର ଦୋଷ ପତିକୁ ଲାଗେ, ସେହିପରି ଶିଷ୍ୟର ପାପରେ ଗୁରୁ ଯେ ଭାଗୀ ହୁଏ, ଏହା ସୁନିଶ୍ଚିତ ।"

**ଦାପୟେତ୍ ସ୍ୱକୃତଂ ଦୋଷଂ ପତ୍ନୀ ପାପଂ ସ୍ୱଭର୍ତ୍ତରି ।**
**ତଥା ଶିଷ୍ୟାର୍ଜିତଂ ପାପଂ ଗୁରୁମାପ୍ନୋତି ନିଶ୍ଚିତମ୍ ।।**

(ଗନ୍ଧର୍ବତନ୍ତ୍ର)

"ଯେପରି ପତ୍ନୀର ଦୋଷ ଓ ପାପ ପତିକୁ ଲାଗେ, ସେହିପରି ଶିଷ୍ୟ ଦ୍ୱାରା ଅର୍ଜିତ ପାପ ଗୁରୁଙ୍କୁ ଅବଶ୍ୟ ଲାଗେ ।"

ଜଣେ ସନ୍ଥଙ୍କର ପୂର୍ବଜନ୍ମର ବାସ୍ତବ ଘଟଣା ଉଦ୍ଧୃତ କରାଯାଉଛି। ପୂର୍ବଜନ୍ମରେ ସେ କୌଣସି ରାଜାଙ୍କର ମନ୍ତ୍ରୀ ଥିଲେ। ତାଙ୍କର ବୈରାଗ୍ୟ ଜାତ ହେବାରୁ ସବୁକିଛି ତ୍ୟାଗ କରି ସେ ଉଚ୍ଚକୋଟିର ବିରକ୍ତ ସନ୍ଥ ହୋଇଗଲେ। ତାଙ୍କ ସାନ୍ନିଧ୍ୟରେ ଅନ୍ୟ କେତେକ ସାଧୁ ନିବାସ କଲେ। ରାଜା ମଧ୍ୟ ତାଙ୍କ ପାଖରୁ ଦୀକ୍ଷା ଗ୍ରହଣ କରି ଭଜନ କରିବା ପାଇଁ ନିର୍ଣ୍ଣୟ କଲେ। ସେ ତାଙ୍କ ନିକଟକୁ ଯାଇ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ। ସମୟକ୍ରମେ ଗୁରୁଙ୍କର (ପୂର୍ବରୁ ମନ୍ତ୍ରୀ ରହିଥିବା ସନ୍ଥଙ୍କର) ଦେହାବସାନ ହେଲା, ଫଳରେ ସେହି ରାଜାଙ୍କୁ ସେଠାକାର ମହନ୍ତ ପଦରେ ନିଯୁକ୍ତ କରି ଦିଆଗଲା। ରାଜାଙ୍କର ଆଗରୁ ଭୋଗ ଉପଭୋଗ କରିବାର ସ୍ୱଭାବ ତ ଥିଲା, ତେଣୁ ସେ ମହନ୍ତ ହେବା ପରେ ଭୋଗରେ ପ୍ରବୃତ୍ତ ହେଲେ। ପରିଣାମସ୍ୱରୂପ ସେହି ରାଜା ମୃତ୍ୟୁ ପରେ ନରକଗାମୀ ହେଲେ। ଗୁରୁଦେବ (ପୂର୍ବରୁ ମନ୍ତ୍ରୀ ହୋଇଥିବା ସନ୍ଥ) ଉଚ୍ଚଲୋକକୁ ଗମନ କରିଥିଲେ। ନରକ ଭୋଗ କରିସାରିବା ପରେ ଯେତେବେଳେ ସେହି ରାଜାଙ୍କର ପୁନର୍ଜନ୍ମ ହେଲା, ସେତେବେଳେ ଗୁରୁଙ୍କୁ ମଧ୍ୟ ତାଙ୍କ ସଙ୍ଗରେ ଜନ୍ମ ନେବାକୁ ପଡ଼ିଲା। ଗୁରୁ ତାଙ୍କୁ ପୁନଶ୍ଚ ଭଗବାନଙ୍କ ପ୍ରତି ସମ୍ମୁଖ କରାଇଲେ, କିନ୍ତୁ ଶିଷ୍ୟଭାବେ ଗ୍ରହଣ ନ କରି ମିତ୍ର ପରି ହିଁ ରଖିଲେ। ଏହାପରେ ଜୀବନ ସାରା ସେ ଆଉ କାହାକୁ ଶିଷ୍ୟ କଲେ ନାହିଁ। ଏହି ଘଟଣାରୁ ପ୍ରମାଣିତ ହୁଏ ଯେ, ଗୁରୁ ଯଦି ତାଙ୍କ ଶିଷ୍ୟର ଉଦ୍ଧାର କରି ନ ପାରନ୍ତି, ତେବେ ଶିଷ୍ୟର ଉଦ୍ଧାର ପାଇଁ ତାଙ୍କୁ ପୁନଶ୍ଚ ସଂସାରକୁ ଫେରି ଆସିବାକୁ ପଡ଼େ। ତେଣୁ ଯେ ଶିଷ୍ୟର ଉଦ୍ଧାର କରିବାରେ ସମର୍ଥ, କେବଳ ସେ ହିଁ ଗୁରୁ ହେବା ଉଚିତ।

ଆଜିକାଲିର ଗୁରୁମାନେ ଚେଲାକୁ ଭଗବାନଙ୍କ ପ୍ରତି ଆକର୍ଷିତ ନ କରାଇ ନିଜ ଆଡ଼କୁ ଆକର୍ଷିତ କରାଉଛନ୍ତି। ଚେଲାକୁ ଭଗବାନଙ୍କର ନ କରାଇ ନିଜର କରୁଛନ୍ତି। ଏହା ଘୋର

ଅପରାଧ*। ଜୀବ ଭଗବାନଙ୍କ ଅଭିମୁଖୀ ହେବାକୁ ଇଚ୍ଛା କରିଥିଲା, ଅଥଚ ତାକୁ ନିଜର ଚେଲା କରିଦେବାରୁ ସେ ଗୁରୁଙ୍କ ଠାରେ ହିଁ ଅଟକି ରହିଗଲା। ବର୍ତ୍ତମାନ ସେ ଆଉ ଭଗବଦ୍‌ଅଭିମୁଖୀ ହେବ କିପରି? ଗୁରୁ ତ ଭଗବଦ୍‌ଅଭିମୁଖୀ ହେବାରେ ନିଜେ ପ୍ରତିବନ୍ଧକ ସୃଷ୍ଟି କଲେ! ଯେ ଭଗବାନଙ୍କର ସମ୍ମୁଖୀ କରାଇ ଦିଅନ୍ତି, ଭଗବାନଙ୍କ ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ କରାଇ ଦିଅନ୍ତି, ସେ ହିଁ ପ୍ରକୃତ ଗୁରୁ। ଉଦାହରଣାର୍ଥ—ହନୁମାନ ବିଭୀଷଣଙ୍କର ବିଶ୍ୱାସକୁ ନିଜ ପ୍ରତି ଦୃଢ଼ ନ କରାଇ ଭଗବାନଙ୍କ ପ୍ରତି ଦୃଢ଼ କରାଇଲେ—

**ସୁନହୁ ବିଭୀଷନ ପ୍ରଭୁ କୈ ରୀତୀ। କରହିଁ ସଦା ସେୱକ ପର ପ୍ରୀତୀ॥**
**କହହୁ କୱନ ମୈଁ ପରମ କୁଲୀନା। କପି ଚଂଚଲ ସବହୀଁ ବିଧି ହୀନା॥**
**ପ୍ରାତ ଲେଇ ଜୋ ନାମ ହମାରା। ତେହି ଦିନ ତାହି ନ ମିଲୈ ଅହାରା॥**
**ଅସ ମୈଁ ଅଧମ ସଖା ସୁନୁ ମୋହୂ ପର ରଘୁବୀର।**
**କୀନ୍ହୀ କୃପା ସୁମିରି ଗୁନ ଭରେ ବିଲୋଚନ ନୀର॥**

(ମାନସ, ସୁନ୍ଦର. ୭)

[ଅର୍ଥ—ହେ ବିଭୀଷଣ! ମୋ କଥା ଶୁଣ, ସେବକ ପ୍ରତି ପ୍ରୀତି କରିବା ପ୍ରଭୁଙ୍କର ଏକ ରୀତି। କହନ୍ତୁ ତ, ମୁଁ ଭଲା କେଉଁ କୁଳୀନ ଅବା! ଜାତିରେ ଚପଳମତି ବାନର ଏବଂ ସବୁ ଦୃଷ୍ଟିରୁ ନୀଚ। ସକାଳୁ ଯିଏ ଆମର ନାମ ଧରେ, ତାକୁ ଦିନ ସାରା ଖାଇବାକୁ ମିଳେନା। ହେ ସଖା! ମୁଁ ଏପରି ଅଧମ ହୋଇଥିଲେ ମଧ୍ୟ ପ୍ରଭୁ ରାମଚନ୍ଦ୍ର ମୋ ଉପରେ କୃପା କରିଛନ୍ତି। ଭଗବାନଙ୍କ ଗୁଣ ସ୍ମରଣ କରି ହନୁମାନଙ୍କର ନେତ୍ରଯୁଗଳ ପ୍ରେମାଶ୍ରୁରେ ପରିପୂର୍ଣ୍ଣ ହୋଇଗଲା।]

---

* ପାପ ଓ ଅପରାଧ ମଧ୍ୟରେ ପାର୍ଥକ୍ୟ ରହିଛି। ପାପର ଫଳ (ନରକ ଆଦି) ଭୋଗ କଲେ ପାପ ନଷ୍ଟ ହୋଇଯାଏ, କିନ୍ତୁ ଯାହା ପ୍ରତି ଅପରାଧ କରାଯାଇଥାଏ, ସେ ପ୍ରସନ୍ନ ନ ହେବାଯାଏ ଅପରାଧ ନଷ୍ଟ ହୁଏ ନାହିଁ। ତେଣୁ ପାପଠାରୁ ମଧ୍ୟ ଅପରାଧ ଆହୁରି ଭୟଙ୍କର।

ସନ୍ଥ ଶ୍ରୀଶରଣାନନ୍ଦ ଲେଖିଛନ୍ତି—"ଯେଉଁ ଉପଦେଷ୍ଟାମାନେ ଭଗବଦ୍-ବିଶ୍ୱାସ ସ୍ଥାନରେ ସେମାନଙ୍କ ନିଜ ବ୍ୟକ୍ତିତ୍ୱର ବିଶ୍ୱାସ ପ୍ରଦାନ କରନ୍ତି ଏବଂ ଭଗବାନଙ୍କ ସହିତ ସମ୍ବନ୍ଧ କରାଇବା ପରିବର୍ତ୍ତେ ନିଜର ବ୍ୟକ୍ତିତ୍ୱ ସହିତ ସମ୍ବନ୍ଧ କରାନ୍ତି, ସେମାନେ ଘୋର ଅନର୍ଥ କରନ୍ତି ।" (ପ୍ରବୋଧନୀ)

କୌଣସି ବ୍ୟକ୍ତି ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ କରିବା ଅପେକ୍ଷା ଭଗବାନଙ୍କ ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ କଲେ ଉନ୍ନତି ଅଧିକ ହେବ, ଶୀଘ୍ର ହେବ ଓ ବିଶେଷଭାବରେ ହେବ । ଯେଉଁ ଗୁରୁ ନିଜଠାରେ ବିଶ୍ୱାସ ସ୍ଥାପନ କରାଏ, ନିଜର ସେବା କରାଏ, ନିଜର ନାମ ଜପ କରିବାକୁ କହେ, ନିଜ ରୂପର ଧ୍ୟାନ କରାଏ, ନିଜର ପୂଜା କରାଏ, ନିଜର ଉଚ୍ଛିଷ୍ଟ ଦିଏ, ନିଜର ଚରଣ ଧୌତ କରାଏ, ସେ ନିଶ୍ଚୟ ପତନ ଗର୍ତ୍ତକୁ ଟାଣି ନିଏ । ତା'ପ୍ରତି ସାବଧାନ ରହିବା ଉଚିତ ।

ଭଗବାନଙ୍କର ଅଂଶ ହୋଇଥିବାରୁ ମନୁଷ୍ୟମାତ୍ରକେ ସମସ୍ତଙ୍କର ସର୍ବଦା ଭଗବାନଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ରହିଛି । ଏହି ସମ୍ବନ୍ଧ ସ୍ୱତଃ ଓ ସ୍ୱାଭାବିକ, କୃତ୍ରିମ ନୁହେଁ । କିନ୍ତୁ ଗୁରୁଙ୍କ ସହିତ କରାଯାଇଥିବା ସମ୍ବନ୍ଧ କୃତ୍ରିମ । କୃତ୍ରିମ ସମ୍ବନ୍ଧରୁ କଲ୍ୟାଣ (ଉଦ୍ଧାର) ହୁଏ ନାହିଁ, ବରଂ ବନ୍ଧନ ହୁଏ । ସଂସାରର କୃତ୍ରିମ ସମ୍ବନ୍ଧ ଯୋଗୁଁ ହିଁ ଆମେ ବନ୍ଧନରେ ପଡ଼ିଛେ । ଆପଣମାନେ ନିଜେ ବିଗ୍ଚର କରନ୍ତୁ, ଯେଉଁମାନେ ଗୁରୁ କରିଛନ୍ତି, ସେ ସମସ୍ତଙ୍କର କଣ କଲ୍ୟାଣ ହୋଇଯାଇଛି? ସେମାନଙ୍କୁ କଣ ତତ୍ତ୍ୱଜ୍ଞାନ ହୋଇଯାଇଛି? ଭଗବତ୍‌ପ୍ରାପ୍ତି ହୋଇଯାଇଛି? ସେମାନେ ସମସ୍ତେ କଣ ଜୀବନ୍ମୁକ୍ତ ହୋଇଯାଇଛନ୍ତି? ଯଦି କାହାକୁ ହୋଇଯାଇଥିବ ବଡ଼ ଆନନ୍ଦର କଥା, କିନ୍ତୁ ମୋର ବିଶ୍ୱାସ ହେଉ ନାହିଁ । ଏକପକ୍ଷରେ ଯେଉଁମାନେ ଗୁରୁ କରିଛନ୍ତି ସେମାନେ ଏବଂ ଅନ୍ୟପକ୍ଷରେ ଯେଉଁମାନେ ଗୁରୁ ନ କରି ସତ୍ସଙ୍ଗ କରୁଛନ୍ତି ସେମାନେ—ଉଭୟଙ୍କ ମଧ୍ୟରେ ଆପଣଙ୍କୁ କିଛି ପାର୍ଥକ୍ୟ ଦେଖାଯାଉଛି କି? ବିଗ୍ଚର କରନ୍ତୁ, ଗୁରୁ କଲେ ଅଧିକ ଉନ୍ନତି ହୁଏ, ନା

ସତ୍ସଙ୍ଗ କଲେ ଅଧିକ ଉନ୍ନତି ହୁଏ? ଗୁରୁ ମୋର କଲ୍ୟାଣ କରିଦେବେ—ଏପରି ଭାବନା ରହିଲେ ସାଧନାରେ ଅବହେଳା ଦେଖାଦିଏ। ତେଣୁ ଗୁରୁ କରିଥିବା ଲେକମାନଙ୍କ ଠାରେ ଯେତେ ରାଗ ଓ ଦ୍ୱେଷଭାବ ଥାଏ, ସତ୍ସଙ୍ଗ କରୁଥିବା ଲୋକମାନଙ୍କ ଠାରେ ସେତେ ନ ଥାଏ। କାହାକୁ ଉତ୍ତମ ସଙ୍ଗ ପ୍ରାପ୍ତ ହୋଇଗଲେ ମଧ୍ୟ ସେ କାହା ସହିତ ଝଗଡ଼ାଝାଟି, ମାରପିଟ କାମ କରେ ନାହିଁ, କିନ୍ତୁ ନିଜକୁ କୌଣସି ଗୁରୁର ଚେଲା ମନେ କରୁଥିବା ବ୍ୟକ୍ତି ଅନ୍ୟ କୌଣସି ଗୁରୁର ଚେଲାମାନଙ୍କ ସହିତ ମାରପିଟ ମଧ୍ୟ କରନ୍ତି। ଗୁରୁ କରିଥିବା ଲୋକମାନଙ୍କ ଠାରେ କୌଣସି ବିଶେଷ ପରିବର୍ତ୍ତନ ହେବାର ଦେଖାଯାଉ ନାହିଁ। କେବଳ ଗୁରୁ କରିଥିବା ଲୋକର 'ଗୁରୁ କରିନେଲି' ବୋଲି ଏକ ଭ୍ରମ ଧାରଣା ହୁଏ ସିନା ଆଉ କିଛି ହୁଏ ନାହିଁ। ତେଣୁ କେବଳ ଗୁରୁ କଲେ ଯେ ମୁକ୍ତି ହୋଇଯାଏ, ଏପରି ଆଦୌ କୌଣସି ନିୟମ ନାହିଁ।

ଗୁରୁ ହେବା ଓ ଗୁରୁ କରିବା ବଡ଼ ବିପଦ୍‌ଜନକ। ଏହା ଖେଳ-ତାମସା ନୁହେଁ। ଧରାଯାଉ କୌଣସି ବ୍ୟକ୍ତି ଲୁଗା ଦୋକାନକୁ ଯାଇ ଦୋକାନୀକୁ ଅମୁକ ଲୁଗା ଦିଅ ବୋଲି କହିଲା। ଏପରି କ୍ଷେତ୍ରରେ ଦୋକାନୀ ଯଦି ତା'ଠାରୁ ଲୁଗାର ମୂଲ୍ୟ ନେଇଯାଇ ତାକୁ ଲୁଗା ନ ଦିଏ, ତେବେ ଏହା କଣ ଉଚିତ ହେବ? ଯଦି ଲୁଗା ଦେଇ ନ ପାରିବ, ମୂଲ୍ୟ ନେଲ କାହିଁକି? ଆଉ ଯଦି ମୂଲ୍ୟ ନେଇଗଲ, ତେବେ ଲୁଗା ନ ଦେଲ କାହିଁକି? ସେହିପରି ଶିଷ୍ୟ ତ କରିବା, ଭେଟି ଓ ପୂଜା ତ ଗ୍ରହଣ କରିବା, କିନ୍ତୁ ଶିଷ୍ୟର ଉଦ୍ଧାର କରିବା ନାହିଁ—ଏହା କଣ ଉଚିତ? ଆଗ ଚେଲା ହୁଅ, ତା'ପରେ ଉଦ୍ଧାର କରାଯିବ—ଏହା କେବଳ ଠକାମି। ଚେଲା ଦ୍ୱାରା ନିଜର ପୂଜା କରାଇଲ, ତା'ଠାରୁ ଭେଟି ନେଇଗଲ, ଚେଲା କଲ ଏବଂ ଭଗବତ୍‌ପ୍ରାପ୍ତି କରାଇବାର ନାଆଁଗନ୍ଧ ନାହିଁ, ତେବେ ତୁମେ ଗୁରୁ ହେଲ କାହିଁକି? ଗୁରୁ ହୋଇଛ ମାନେ ଭଗବତ୍‌ପ୍ରାପ୍ତି କରାଅ ଏବଂ ଯଦି ଭଗବତ୍‌ପ୍ରାପ୍ତି କରାଇ

ପାରିବ ନାହିଁ, ତେବେ ତୁମର ଗୁରୁ ହେବାର କୌଣସି ଅଧିକାର ନାହିଁ। ଯଦି ଚେଲାର କଲ୍ୟାଣ କରି ପାରିବ ନାହିଁ, ତେବେ ତାକୁ ଅନ୍ୟ ସ୍ଥାନକୁ ଯିବାକୁ ସୁଯୋଗ ଦିଅ। ଯଦି ତୁମେ ନିଜେ କଲ୍ୟାଣ କରି ପାରିବ ନାହିଁ, ତେବେ ତାକୁ ପ୍ରତିରୋଧ କରିବାର ତୁମର କି ଅଧିକାର ଅଛି? ନିଜେ କଲ୍ୟାଣ କରୁ ନାହଁ ଏବଂ ତାକୁ ଅନ୍ୟ କୁଆଡ଼େ ଯିବାକୁ ଦେଉ ନାହଁ; ତାହେଲେ ଏପରି କରି ତୁମେ ଶିଷ୍ୟର ଜୀବନ ନଷ୍ଟ କରିଦେଲ! ତା'ର ମନୁଷ୍ୟଜନ୍ମ ନିରର୍ଥକ କରିଦେଲ! ସେ ବିଚରା ନିଜର କଲ୍ୟାଣ କରିବ କିପରି? ତେଣୁ ଯେତେ ଦୂର ସମ୍ଭବ ଗୁରୁ-ଶିଷ୍ୟ ସମ୍ବନ୍ଧ ଯୋଡ଼ିବା ଅନୁଚିତ। ଗୁରୁ-ଶିଷ୍ୟ ସମ୍ବନ୍ଧ ନ ଯୋଡ଼ି ସନ୍ଥଙ୍କ କଥା ମାନିଲେ ଉନ୍ନତି ହେବ ଆଉ ନ ମାନିଲେ ମଧ୍ୟ କ୍ଷତି ହେବ ନାହିଁ। କିନ୍ତୁ ଗୁରୁ-ଶିଷ୍ୟ ସମ୍ବନ୍ଧ ସ୍ଥାପନ କରି କଥା ନ ମାନିଲେ କ୍ଷତି ହେବ। କାରଣ ଗୁରୁ ଯଦି ଠିକ୍ ହୋଇଥାନ୍ତି ଆଉ ତୁମେ ତାଙ୍କର ଗୋଟିଏ କଥାକୁ ବି ଅବହେଳା କର, ତାଙ୍କ ଆଜ୍ଞା ପାଳନ ନ କର, ତେବେ ଏହାଦ୍ୱାରା ଗୁରୁଙ୍କ ପ୍ରତି ଅପରାଧ ହୁଏ। ଏହି ଅପରାଧକୁ ଭଗବାନ ମଧ୍ୟ କ୍ଷମା କରି ପାରନ୍ତି ନାହିଁ!

**ଶିବକ୍ରୋଧାଦ୍ ଗୁରୁସ୍ତ୍ରାତା ଗୁରୁକ୍ରୋଧାଚ୍ଛିବୋ ନ ହି।**
**ତସ୍ମାଦ୍ ସର୍ବପ୍ରଯତ୍ନେନ ଗୁରୋରାଜ୍ଞାଂ ନ ଲଙ୍ଘୟେତ୍ ॥**

(ଗୁରୁଗୀତା)

"ଶିବଙ୍କ କ୍ରୋଧରୁ ତ ଗୁରୁ ରକ୍ଷା କରି ପାରନ୍ତି, କିନ୍ତୁ ଗୁରୁଙ୍କ କ୍ରୋଧରୁ ଶିବ ମଧ୍ୟ ରକ୍ଷା କରି ପାରନ୍ତି ନାହିଁ। ତେଣୁ ଗୁରୁଙ୍କ ଆଜ୍ଞା ଉଲ୍ଲଂଘନ ନ କରିବାକୁ ସମସ୍ତ ପ୍ରକାର ପ୍ରଯତ୍ନ କରିବା ଉଚିତ।

**ରାଖଇ ଗୁରୁ ଜୌଁ କୋପ ବିଧାତା। ଗୁର ବିରୋଧ ନହିଁ କୋଉ ଜଗ ତ୍ରାତା॥**

(ମାନସ, ବାଲ. ୧୬୬।୩)



# ପ୍ରକୃତ ଗୁରୁ ଦୁର୍ଲଭ

**ଗୁରବୋ ବହବଃ ସନ୍ତି ଶିଷ୍ୟବିତ୍ତାପହାରକାଃ ।**
**ତମେକଂ ଦୁର୍ଲଭଂ ମନ୍ୟେ ଶିଷ୍ୟହୃତ୍ତାପହାରକମ୍ ॥**

(ଗୁରୁଗୀତା)

"ଶିଷ୍ୟର ଧନ ହରଣ କରୁଥିବା ଗୁରୁ ତ ବହୁତ ମିଳନ୍ତି, କିନ୍ତୁ ଶିଷ୍ୟ ହୃଦୟର ତାପ ହରଣ କରୁଥିବା ଗୁରୁ ଦୁର୍ଲଭ ।"

ପ୍ରତ୍ୟେକ ପ୍ରାଣୀଙ୍କ ହିତରେ ପ୍ରୀତି ହେବା କଥା ଗୀତାରେ ବର୍ଣ୍ଣିତ—**'ସର୍ବଭୂତହିତେ ରତାଃ'** (୫ । ୨୫, ୧୨ । ୪) । ପ୍ରକୃତ ସନ୍ଥଙ୍କର ଦୃଷ୍ଟି ପ୍ରାଣୀମାନଙ୍କ ହିତ ପ୍ରତି ରହିଥାଏ । ପ୍ରାଣୀମାନଙ୍କୁ ନିଜ ପ୍ରତି ଆକର୍ଷିତ କରିବାର ଭାବନା ତାଙ୍କର ନ ଥାଏ । ସେ କାହାକୁ ନିଜର ଶିଷ୍ୟ କରନ୍ତି ନାହିଁ, ନିଜର ଗୋଷ୍ଠୀ ଗଠନ କରନ୍ତି ନାହିଁ ଏବଂ କାହାଠାରୁ କିଛି ନିଅନ୍ତି ନାହିଁ, ବରଂ ଅନ୍ୟମାନଙ୍କର ଯେପରି କଲ୍ୟାଣ ହେବ, ସେଥିପ୍ରତି ତାଙ୍କର ଦୃଷ୍ଟି ଥାଏ ଏବଂ ସେ କେବଳ ନିଜର ଶିଷ୍ୟମାନଙ୍କ ପାଇଁ ନୁହେଁ, ବରଂ ସମସ୍ତ ପ୍ରାଣୀମାନଙ୍କ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରନ୍ତି—

**ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ ।**
**ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ॥**

ଭୁକ୍ତଭୋଗୀ ହୋଇଥିବାରୁ ସେ ଜାଣନ୍ତି ଯେ ସଂସାରରେ କେତେ ଦୁଃଖ ଅଛି ଏବଂ ସଂସାରରୁ ସମ୍ବନ୍ଧ ବିଚ୍ଛେଦ କଲେ କେତେ ସୁଖ ମିଳିବ । ତେଣୁ ସେ ସର୍ବଦା ଏହି ଇଚ୍ଛା କରନ୍ତି ଯେ, ଅନ୍ୟମାନେ ମଧ୍ୟ ସଂସାରର ଦୁଃଖରୁ ନିସ୍ତାର ପାଆନ୍ତୁ ଏବଂ ସବୁଦିନ ପାଇଁ ପରମସୁଖ ଅନୁଭବ କରନ୍ତୁ ।

ବର୍ତ୍ତମାନ ସମୟରେ ପ୍ରକୃତ ସନ୍ଥମହାତ୍ମା ମିଳିବା ପ୍ରାୟ ବିରଳ। ପ୍ରକୃତ ମହାତ୍ମା ପୂର୍ବକାଳରେ ମଧ୍ୟ ଅତି କମ୍ ଥିଲେ, ଆଜିକାଲି ତ ଆହୁରି କମ୍ ହୋଇଗଲେଣି। ଆଜିକାଲି ଗୁରୁ ହେବା ଏକ ପେଶା(ବ୍ୟବସାୟ)ରେ ପରିଣତ ହୋଇଗଲାଣି। ତଥାକଥିତ ଗୁରୁମାନେ ନିଜର ଜୀବିକା ଚଳାଇବା ପାଇଁ, ନିଜର ମନୋନୁକୂଳ କାର୍ଯ୍ୟ ସିଦ୍ଧ କରିବା ପାଇଁ, ମାନବଡ଼ିମା (ଶରୀରର ମାନ ଓ ନାମର ବଡ଼ିମା) ପାଇବା ପାଇଁ, ନିଜର ସ୍ୱାର୍ଥସିଦ୍ଧି କରିବା ପାଇଁ ଚେଲା କରୁଛନ୍ତି। ଚେଲାମାନଙ୍କର ମଧ୍ୟ ଏହିପରି ଭାବନା ରହୁଛି!

**ଗୁରୁ ଲୋଭୀ ସିଷ ଲାଲଚୀ, ଦୋନୌଁ ଖେଲେ ଦାଁଭ।**
**ଦୋନୌଁ ଡୂବା 'ପରସରାମ', ବୈଠ ପଥରକୀ ନାଁଭ॥**

[ଅର୍ଥ—ଲୋଭୀ ଗୁରୁ ଓ ଲାଳସୀ ଶିଷ୍ୟ ଦୁହେଁ ଖେଳରେ ଜିତିବା ପାଇଁ ଚେଷ୍ଟା କରୁଛନ୍ତି। କବି ପରଶରାମ କହୁଛନ୍ତି ଯେ ଦୁହେଁ ପଥରର ନାବ ଉପରେ ବସିଥିବାରୁ ବୁଡ଼ିବା ସୁନିଶ୍ଚିତ।]

ଆଜିର ଯୁଗରେ ସବୁକିଛି ନକଲି। ବ୍ରାହ୍ମଣ ମଧ୍ୟ ନକଲି, କ୍ଷତ୍ରିୟ ମଧ୍ୟ ନକଲି, ବୈଶ୍ୟ ମଧ୍ୟ ନକଲି, ଶୂଦ୍ର ମଧ୍ୟ ନକଲି, ବ୍ରହ୍ମଚାରୀ ମଧ୍ୟ ନକଲି, ଗୃହସ୍ଥ ମଧ୍ୟ ନକଲି, ବାନପ୍ରସ୍ଥ ମଧ୍ୟ ନକଲି, ସାଧୁ ମଧ୍ୟ ନକଲି, ଏପରି କି ପନିପରିବା, ଫଳଫୁଲ, ମସଲା, କ୍ଷୀର, ଘିଅ ଆଦି ମଧ୍ୟ ନକଲି ହୋଇଗଲାଣି। ସବୁକିଛି ନକଲି, ତେଣୁ ଗୁରୁମାନେ ମଧ୍ୟ ନକଲି—

**ମିଥ୍ୟାରଂଭ ଦଂଭ ରତ ଜୋଈ। ତା କହୁଁ ସଂତ କହଇ ସବ କୋଈ॥**
**ନିରାଚାର ଜୋ ଶ୍ରୁତି ପଥ ତ୍ୟାଗୀ। କଲିଜୁଗ ସୋଇ ଗ୍ୟାନୀ ସୋ ବିରାଗୀ॥**

(ମାନସ, ଉତ୍ତର. ୯୮।୨, ୪)

[ଅର୍ଥ—ଯେଉଁମାନେ ମିଥ୍ୟାଚାରୀ ଓ ଦାମ୍ଭିକ, ସମସ୍ତେ ସେମାନଙ୍କୁ

ହିଁ ସନ୍ଥ କହନ୍ତି। କଳିଯୁଗରେ ଆଶ୍ରମବିହୀନ ଓ ବେଦମାର୍ଗ ପରିତ୍ୟାଗୀ ଲୋକେ ହିଁ ଜ୍ଞାନୀ ଓ ବୈରାଗୀ ପଦବାଚ୍ୟ ହୁଅନ୍ତି।।

କେବଳ ସାଧୁ ହୋଇଗଲେ କଲ୍ୟାଣ ହୋଇଯାଏ ନାହିଁ। ମୁଁ ନିଜେ ସାଧୁ ହୋଇ ଦେଖିଛି। ତେଣୁ ଆତ୍ମକଲ୍ୟାଣାଭିଳାଷୀ ବ୍ୟକ୍ତି କୌଣସି ମନୁଷ୍ୟର ଫାନ୍ଦରେ ପଡ଼ିବା ଉଚିତ ନୁହେଁ, କାହାକୁ ଗୁରୁ କରିବା ଉଚିତ ନୁହେଁ।

ବାସ୍ତବରେ କଲ୍ୟାଣ, ମୁକ୍ତି, ତତ୍ତ୍ୱଜ୍ଞାନ ଓ ପରମାତ୍ମପ୍ରାପ୍ତି ଗୁରୁଙ୍କର ଅଧୀନ ନୁହେଁ। ଯଦି ଗୁରୁ ନ କଲେ ତତ୍ତ୍ୱଜ୍ଞାନ ହୁଏ ନାହିଁ ବୋଲି ଧରାଯାଏ, ତେବେ ଯିଏ ସୃଷ୍ଟିରେ ସର୍ବପ୍ରଥମେ ଗୁରୁ ହୋଇଥିବେ, ତାଙ୍କୁ ତତ୍ତ୍ୱଜ୍ଞାନ ହୋଇଥିବ କିପରି? ଯଦି କୌଣସି ମନୁଷ୍ୟକୁ ଗୁରୁ ନ କରି ତାଙ୍କୁ ତତ୍ତ୍ୱଜ୍ଞାନ ହୋଇଗଲା, ତେବେ ଏଥିରୁ ପ୍ରମାଣିତ ହେଉଛି ଯେ କୌଣସି ମନୁଷ୍ୟକୁ ଗୁରୁ ନ କରି ମଧ୍ୟ ଜଗଦ୍‌ଗୁରୁ ଭଗବାନଙ୍କ କୃପାରୁ ତତ୍ତ୍ୱଜ୍ଞାନ ହୋଇଯାଇ ପାରିବ। କିନ୍ତୁ ଆଜିକାଲି ତ ଏପରି ପ୍ରଥା ପ୍ରଚଳିତ ହୋଇଗଲାଣି ଯେ "ପ୍ରଥମେ ଚେଲା ହୁଅ, ଗୁରୁମନ୍ତ୍ର ନିଅ, ତା'ପରେ ଯାଇ ଉପଦେଶ ଦିଆଯିବ।" ଏପରି ସ୍ଥିତିରେ ଗୁରୁ କଲେ ଶିଷ୍ୟର ଅତି ଦୁର୍ଦଶା ହୁଏ। ଚେଲାର ଭାବଧାରା ମେଳ ଖାଏ ନାହିଁ, ଶ୍ରଦ୍ଧା ହୁଏ ନାହିଁ, ଉନ୍ନତି ହେବାର ଜଣା ପଡ଼େ ନାହିଁ, ହୃଦୟରେ ଭ୍ରମ ମଧ୍ୟ ଦୂର ହୁଏ ନାହିଁ, ଏଣେ ଗୁରୁଙ୍କୁ ଛାଡ଼ି ଅନ୍ୟ କେଉଁଠିକି ଯାଇ ହୁଏ ନାହିଁ। ମୋତେ କେହି ପରାମର୍ଶ ମାଗିଲେ ମୁଁ କହିବି ଯେ, ସତ୍ସଙ୍ଗ କର, ଲାଭାନ୍ୱିତ ହୁଅ, କିନ୍ତୁ କାହାକୁ ଗୁରୁ କର ନାହିଁ। ଯେଉଁ ଯେଉଁ ଠାରୁ ଯାହା କିଛି ଭଲ କଥା ମିଳୁଛି, ସେଠାରୁ ତାହାକୁ ଗ୍ରହଣ କର ଏବଂ ଯେଉଁଠି କିଛି ଭଲ କଥା ମିଳୁ ନାହିଁ, ସେଠାରୁ ଛାଡ଼ି ଚାଲିଯାଅ। ଗୁରୁ କରି ବାନ୍ଧି ହୁଅ ନାହିଁ।

**ମଧୁଲୁବ୍ଧୋ ଯଥା ଭୃଙ୍ଗଃ ପୁଷ୍ପାତ୍ ପୁଷ୍ପାନ୍ତରଂ ବ୍ରଜେତ୍ ।**
**ଜ୍ଞାନଲୁବ୍ଧସ୍ତଥା ଶିଷ୍ୟୋ ଗୁରୋର୍ଗୁର୍ବନ୍ତରଂ ବ୍ରଜେତ୍ ॥**

(ଗୁରୁଗୀତା)

''ମଧୁଲୁବ୍ଧ ଭ୍ରମର ଯେପରି ଗୋଟିଏ ପୁଷ୍ପରୁ ଅନ୍ୟ ପୁଷ୍ପକୁ ଯାଏ, ଜ୍ଞାନଲୁବ୍ଧ ଶିଷ୍ୟ ସେହିପରି ଜଣେ ଗୁରୁଙ୍କ ନିକଟରୁ ଅନ୍ୟ ଗୁରୁଙ୍କ ନିକଟକୁ ଯିବା ଉଚିତ ।''

ଗୁରୁ କରିନେବା ପରେ ଭବିଷ୍ୟତରେ ଜଣା ନାହିଁ କି ଦଶା ହେବ! ଏପରି କେତେକ ଲୋକଙ୍କୁ ମୁଁ ଦେଖିଛି, ଯେଉଁମାନେ ନିଜ ଦୃଷ୍ଟିରୁ ବହୁତ ଭଲରୁ ଭଲ ଗୁରୁ କଲେ, କିନ୍ତୁ ପରେ ସେମାନଙ୍କର ତାଙ୍କ ପ୍ରତି ସେଭଳି ଶ୍ରଦ୍ଧା ରହିଲା ନାହିଁ । ତେଣୁ ଆତ୍ମକଲ୍ୟାଣାଭିଳାଷୀ ମନୁଷ୍ୟ କାହା ସହିତ ସମ୍ବନ୍ଧ ସ୍ଥାପନ କରିବା ଅନୁଚିତ । ସଂସାର ସହିତ ସମ୍ବନ୍ଧ ଯୋଡୁଥିବା ବ୍ୟକ୍ତି ନିଜର ମଧ୍ୟ କଲ୍ୟାଣ କରିପାରେ ନାହିଁ, ପୁଣି ସେ ଅନ୍ୟର କଲ୍ୟାଣ କରିବ କଣ?

ଆଜିକାଲି ପ୍ରକୃତ ଗୁରୁ ମିଳିବା ଅତ୍ୟନ୍ତ କଠିନ । ବାସ୍ତବ ତତ୍ତ୍ୱର ଅନୁଭବୀ ମନୁଷ୍ୟ ବର୍ତ୍ତମାନକାଳରେ ମିଳିବା ବିରଳ । ଯିଏ ନିଜେ ତତ୍ତ୍ୱ ଜାଣି ନାହିଁ, ସେ ଶିଷ୍ୟକୁ କଣ ବା ବୁଝାଇବ? ପ୍ରକୃତ ତତ୍ତ୍ୱ ଜାଣିଥିବା ଗୁରୁ ପୂର୍ବ କାଳରେ ମଧ୍ୟ କମ୍ ଥିଲେ । ପୂର୍ବକାଳର ସନ୍ଥମାନଙ୍କ ଦ୍ୱାରା ଲିଖିତ ପୁସ୍ତକ ପଢ଼ିଲେ ମଧ୍ୟ ମୋତେ ପୂର୍ଣ୍ଣ ସନ୍ତୁଷ୍ଟି ମିଳୁ ନାହୁଁ । ଯେଉଁ ସନ୍ଥମାନଙ୍କ ମନରେ ମତଭେଦ ନ ଥାଏ ଅର୍ଥାତ୍ ଦ୍ୱୈତ, ଅଦ୍ୱୈତ, ଦ୍ୱୈତାଦ୍ୱୈତ, ବିଶିଷ୍ଟାଦ୍ୱୈତ ଆଦି କୌଣସି ଗୋଟିଏ ମତ ପ୍ରତି ଆଗ୍ରହ ନ ଥାଏ, ସେହିମାନେ ହେଉଛନ୍ତି ସର୍ବୋତ୍ତମ ସନ୍ଥ । ତେଣୁ ସାଧକ ପାଇଁ ସବୁଠୁ ଭଲ କଥା ହେଲା ଯେ ସେ ମନପ୍ରାଣ ଦେଇ ପବିତ୍ର ହୃଦୟରେ ଭଗବାନଙ୍କ ଠାରେ ନିମଗ୍ନ ରହୁ । କୌଣସି ବ୍ୟକ୍ତିବିଶେଷକୁ ନ ଧରି ପରମାତ୍ମାଙ୍କୁ ଧରୁ । ବ୍ୟକ୍ତିଠାରେ ପୂର୍ଣ୍ଣତ୍ୱ ନ

ଥାଏ । ପରମାତ୍ମା ହିଁ ପୂର୍ଣ୍ଣ । ଆମେ ପବିତ୍ର ହୃଦୟରେ ପରମାତ୍ମାଙ୍କ ପ୍ରତି ସମ୍ମୁଖୀ ହୋଇଗଲେ ସେ ଯୋଗ, ଜ୍ଞାନ, ଭକ୍ତି ପ୍ରଭୃତି ସବୁକିଛି ପ୍ରଦାନ କରନ୍ତି* ।



---

* ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକମ୍ ।
ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତି ତେ ॥
ତେଷାମେବାନୁକମ୍ପାର୍ଥମହମଜ୍ଞାନଜଂ ତମଃ ।
ନାଶୟାମ୍ୟାତ୍ମଭାବସ୍ଥୋ ଜ୍ଞାନଦୀପେନ ଭାସ୍ୱତା ॥ (ଗୀତା ୧୦ । ୧୦,୧୧)

''ନିତ୍ୟ-ନିରନ୍ତର ମୋ'ଠାରେ ସଂଯୁକ୍ତ ଓ ପ୍ରେମପୂର୍ବକ ମୋ ଭଜନରେ ରତ ଭକ୍ତମାନଙ୍କୁ ମୁଁ ସେହି ବୁଦ୍ଧିଯୋଗ ପ୍ରଦାନ କରେ, ଯଦ୍ଦ୍ୱାରା ସେମାନେ ମୋତେ ପ୍ରାପ୍ତ ହୁଅନ୍ତି ।''

''ସେହି ଭକ୍ତମାନଙ୍କ ଉପରେ କୃପା କରିବା ପାଇଁ ସେମାନଙ୍କ ସ୍ୱରୂପ(ଅସ୍ତିତ୍ୱ)ରେ ସ୍ଥିତ ହୋଇଥିବା ମୁଁ ସେମାନଙ୍କ ଅଜ୍ଞାନଜନିତ ଅନ୍ଧକାରକୁ ଦେଦୀପ୍ୟମାନ ଜ୍ଞାନରୂପକ ଦୀପ ଦ୍ୱାରା ନଷ୍ଟ କରିଦିଏ ।''

# ବିବେକ ହିଁ ମନୁଷ୍ୟର ଜନ୍ମଜାତ ଗୁରୁ

ଏକ ମାର୍ମିକ କଥା ହେଲା, ଜଗଦ୍‌ଗୁରୁ ଭଗବାନ ଯେହେତୁ ତାଙ୍କୁ ଲାଭ କରିବା ପାଇଁ ଆମ୍ଭମାନଙ୍କୁ ମନୁଷ୍ୟଶରୀର ଦେଇଛନ୍ତି, ତେଣୁ ସେ ତା'ସହିତ ବିବେକରୂପୀ ଗୁରୁ ମଧ୍ୟ ଦେଇଛନ୍ତି । ଭଗବାନ କଦାପି କୌଣସି ଅପୂର୍ଣ୍ଣ କାର୍ଯ୍ୟ କରନ୍ତି ନାହିଁ । ଉଚ୍ଚପଦସ୍ଥ ଅଫିସରକୁ ଯେପରି ଘର, ଗୃକର, ମୋଟରଗାଡ଼ି ପ୍ରଭୃତି ସମସ୍ତ ସୁବିଧା ମିଳେ, ସେହିପରି ଭଗବାନ କଲ୍ୟାଣ ପାଇଁ ମନୁଷ୍ୟଶରୀର ଦେବା ସହିତ ସମସ୍ତ ସାମଗ୍ରୀ ମଧ୍ୟ ଦେଇଛନ୍ତି । ସେ ମନୁଷ୍ୟକୁ 'ବିବେକ'ରୂପୀ ଗୁରୁ ଦେଇଛନ୍ତି, ଯାହା ସାହାଯ୍ୟରେ ମନୁଷ୍ୟ ସତ୍ ଓ ଅସତ୍‌କୁ, କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ, ଉଚିତ ଓ ଅନୁଚିତକୁ ଠିକ୍‌ଭାବେ ଜାଣି ପାରିବ । ଏହି ବିବେକଠାରୁ ବଳି ଅନ୍ୟ କୌଣସି ଗୁରୁ ନାହିଁ । ଯିଏ ନିଜ ବିବେକକୁ ଆଦର କରେ, ତାକୁ ଆତ୍ମକଲ୍ୟାଣ ପାଇଁ ବାହ୍ୟ ଗୁରୁ କରିବାର ଆବଶ୍ୟକତା ନାହିଁ । ଯେ ନିଜ ବିବେକକୁ ଆଦର କରେ ନାହିଁ, ସେ ବାହାରେ କାହାକୁ ଗୁରୁ କଲେ ମଧ୍ୟ ଆତ୍ମକଲ୍ୟାଣ କରି ପାରିବ ନାହିଁ । ଏଇଥିପାଇଁ ବାହ୍ୟଭାବେ ଗୁରୁ କଲେ ମଧ୍ୟ କଲ୍ୟାଣ ହୁଏ ନାହିଁ ।

ମନୁଷ୍ୟ ନିଜର ବିବେକକୁ ଯେତେ ଅଧିକ ମହତ୍ତ୍ୱ ଦିଏ ଓ ଉପଯୋଗ କରେ, ବିବେକର ସେତେ ଅଧିକ ବୃଦ୍ଧି ହୁଏ ଏବଂ ବୃଦ୍ଧି ହୋଇ ସେହି ବିବେକ ହିଁ ଉନ୍ନତ ରୂପ ଧାରଣ କରି ତତ୍ତ୍ୱଜ୍ଞାନରେ ପରିଣତ ହୋଇଯାଏ । କେବଳ ଗୁରୁ କଲେ ବିବେକର ଆଦର ହୋଇଯାଏ ନାହିଁ, ବରଂ ବିବେକର ଆଦର ସତ୍ସଙ୍ଗ ଦ୍ୱାରା ହୁଏ— **'ବିନୁ ସତସଂଗ ବିବେକ ନ ହୋଇ'** (ମାନସ, ବାଲ. ୩ । ୪) । ପ୍ରକୃତ ସନ୍ତମହାତ୍ମା କାହାକୁ ଶିଷ୍ୟ କରନ୍ତି ନାହିଁ, ତଥାପି ତାଙ୍କର ସତ୍ସଙ୍ଗ

କଲେ ଉଦ୍ଧାର ହୁଏ । ତାଙ୍କ ଆଚରଣରୁ ଶିକ୍ଷା ମିଳେ, ତାଙ୍କ ବାଣୀରୁ ଶାସ୍ତ୍ର ରଚିତ ହୁଏ । ତେଣୁ ଯେଉଁଠି ଭଲ ସତ୍ସଙ୍ଗ ମିଳିବ, ନିଜ ଉଦ୍ଧାର ସମ୍ବନ୍ଧୀୟ ଉପଦେଶ ମିଳିବ ସେଠାରେ ସତ୍ସଙ୍ଗ କରିବା ଉଚିତ, କିନ୍ତୁ ଯଥାସମ୍ଭବ ଗୁରୁ ଓ ଶିଷ୍ୟର ସମ୍ବନ୍ଧ ସ୍ଥାପନ କରିବା ଅନୁଚିତ ।

ମେୱାଡ଼ରେ ଜଣେ ରାଜା ଥିଲେ । ତାଙ୍କ କକାଙ୍କ ନାମ ଥିଲା ଚତୁର ସିଂହ । ସେ ସତ୍ସଙ୍ଗ ଶୁଣୁଥିଲେ ଏବଂ ସତ୍ସଙ୍ଗରେ କୌଣସି ଉତ୍ତମ କଥା ଶୁଣିବାମାତ୍ରେ ସେହିକ୍ଷଣି ସେହି ଉପଦେଶକୁ କାମରେ ଲଗାଇବାକୁ ମନସ୍ଥ କରି ନେଉଥିଲେ । ସେ ନିର୍ଣ୍ଣୟ କରି ନେଉଥିଲେ ଯେ ଏହି ଉତ୍ତମ କଥାଟି ମୋ ଜୀବନକାଳ ଭିତରେ ଆଉ ମିଳିବ ନାହିଁ । ଏପରି କରି କରି ସେ ଜଣେ ଉଚ୍ଚକୋଟିର ସନ୍ଥ ହୋଇଗଲେ । ସେ ଅନେକ ଗ୍ରନ୍ଥ ରଚନା କଲେ ଏବଂ ମେୱାଡ଼ୀ ଭାଷାର ବାଲ୍ମୀକି ରୂପେ ପରିଚିତ ହେଲେ । ସେହିପରି ଆପଣମାନଙ୍କୁ ମଧ୍ୟ ଯେଉଁ ଉତ୍ତମ କଥାମାନ ମିଳିବ, ସେଗୁଡ଼ିକୁ ଗ୍ରହଣ କରି କରି ଚାଲିଲେ ଆପଣମାନେ ମଧ୍ୟ ସନ୍ଥ ହୋଇଯାଇ ପାରିବେ ।

□□□

# କଲ୍ୟାଣପ୍ରାପ୍ତିରେ ଶିଷ୍ୟର ପ୍ରାଧାନ୍ୟ

ଗୁରୁ ଯଦି କୌଣସି ମଠର ମହନ୍ତ ହୋଇଥାନ୍ତି, ତାଙ୍କ ପାଖରେ ଯଦି କୋଟି କୋଟି ଟଙ୍କା ଥାଏ, ତେବେ ତାଙ୍କଠାରୁ ଟଙ୍କା ପାଇବାକୁ ହେଲେ ଗୁରୁଙ୍କର ପ୍ରାଧାନ୍ୟ ରହିବା ସ୍ୱାଭାବିକ। ଗୁରୁ ଚେଲାକୁ ସ୍ୱୀକାର କଲେ ଯାଇ ଚେଲାକୁ ଧନ ମିଳିବ। ଗୁରୁଙ୍କ ଇଚ୍ଛା ବିନା ଚେଲା ତାଙ୍କଠାରୁ ଧନ ନେଇ ପାରିବ ନାହିଁ। ଏହିରୂପେ ଧନପ୍ରାପ୍ତିରେ ତ ଗୁରୁଙ୍କର ପ୍ରାଧାନ୍ୟ ଥାଏ, କିନ୍ତୁ କଲ୍ୟାଣ ଓ ବିଦ୍ୟା ପ୍ରାପ୍ତିରେ ଚେଲାର ହିଁ ପ୍ରାଧାନ୍ୟ ରହିବ। ଚେଲାର ଯଦି ଆତ୍ମକଲ୍ୟାଣ ପାଇଁ ଉତ୍କଣ୍ଠା ନ ଥିବ, ତେବେ ଗୁରୁ ତା'ର କଲ୍ୟାଣ କରି ପାରିବେ ନାହିଁ, ମାତ୍ର ଚେଲାର ଆତ୍ମକଲ୍ୟାଣର ଉତ୍କଣ୍ଠା ଥିଲେ ଗୁରୁ ତାକୁ ଗ୍ରହଣ ନ କଲେ ମଧ୍ୟ ସେ ନିଜର କଲ୍ୟାଣ କରି ପାରିବ।

ସ୍ୱାମୀ ରାମାନନ୍ଦ କବୀରଙ୍କୁ ଶିଷ୍ୟ କରିବାକୁ ମନା କରିବାରୁ କବୀର ଦିନେ ବାରାଣସୀର ପଞ୍ଚଗଙ୍ଗା ଘାଟର ପାହାଚ ଉପରେ ଶୋଇ ରହିଲେ। ସ୍ୱାମୀ ରାମାନନ୍ଦ ସ୍ନାନ କରିବା ପାଇଁ ସେହି ବାଟେ ଯିବାବେଳେ ଅଜାଣତରେ ତାଙ୍କ ଗୋଡ଼ କବୀରଙ୍କ ଉପରେ ପଡ଼ିଗଲା ଏବଂ ସେ 'ରାମ ରାମ' କହି ଉଠିଲେ। ସେହି ଦିନଠାରୁ କବୀର 'ରାମ' ନାମକୁ ଗୁରୁମନ୍ତ୍ର ବୋଲି ମାନିନେଲେ ଏବଂ ସାଧନାରେ ମଜ୍ଜି ରହିଲେ। ପରିଣାମରେ କବୀର ସନ୍ଥମାନଙ୍କ ମଧ୍ୟରେ ଚକ୍ରବର୍ତ୍ତୀ ସନ୍ଥ ହୋଇ ପାରିଲେ! ସେହିପରି ଏକଲବ୍ୟକୁ ଦ୍ରୋଣାଚାର୍ଯ୍ୟ ଶିଷ୍ୟରୂପେ ସ୍ୱୀକାର କଲେ ନାହିଁ। ସେ ଦ୍ରୋଣାଚାର୍ଯ୍ୟଙ୍କ ପ୍ରତିମା ଗଠନ କରି ଏବଂ ତାଙ୍କୁ ଗୁରୁ ମନେକରି ଧନୁର୍ବିଦ୍ୟା ଅଭ୍ୟାସ କଲେ। ପରିଣାମରେ ସେ

ଅର୍ଜୁନଙ୍କ ଠାରୁ ମଧ୍ୟ ଶ୍ରେଷ୍ଠ ହୋଇ ପାରିଲେ! ତେଣୁ କେବଳ ଗୁରୁ କରିଦେଲେ ଯେ କଲ୍ୟାଣ ହୋଇଯିବ, ଏହି ଭାବନାର କିଛି ଅର୍ଥ ନାହିଁ। ଯଦି ଏପରି ହୋଇଯାଉଥାଆନ୍ତା, ତେବେ ଯେଉଁମାନେ ଗୁରୁ କରି ସାରିଛନ୍ତି, କଣ ସେ ସମସ୍ତ ଲୋକଙ୍କର କଲ୍ୟାଣ ହୋଇ ଯାଇଛି? ସେ ସମସ୍ତଙ୍କୁ କଣ ଭଗବାନ ମିଳିଗଲେଣି? ଯାହାଙ୍କ ଉପଦେଶ ଓ ମାର୍ଗଦର୍ଶନ ଦ୍ୱାରା ଆମର କଲ୍ୟାଣ ହୁଏ, ବାସ୍ତବରେ ସେ ହିଁ ଆମର ଗୁରୁ। ଆମେ ତାଙ୍କୁ ଗୁରୁରୂପେ ମାନୁ ବା ନ ମାନୁ, ସେ ଆମକୁ ଚେଲା ମାନନ୍ତୁ ବା ନ ମାନନ୍ତୁ ଏବଂ ସେ ଆମକୁ ଜାଣିଥାଆନ୍ତୁ ବା ନ ଜାଣିଥାଆନ୍ତୁ, ସେ ହିଁ ଗୁରୁ। ଦତ୍ତାତ୍ରେୟ ତାଙ୍କର ଚବିଶ ଗୁରୁଙ୍କ ବିଷୟରେ ଭାଗବତରେ କହିଛନ୍ତି। ସେହି ଗୁରୁମାନଙ୍କ ମଧ୍ୟରୁ କେହି କଣ ଆସି ତାଙ୍କୁ କହିଥିଲେ ଯେ ତୁ ମୋର ଚେଲା ଓ ମୁଁ ତୋର ଗୁରୁ? ଗୁରୁ ଏପରି କରିବା ଉଚିତ, ଯେପରି ଗୁରୁଙ୍କୁ ମଧ୍ୟ ଜଣା ପଡ଼ିବ ନାହିଁ ଯେ ଅମୁକ ମୋର ଚେଲା।

□□□

# ଭଗବତ୍‌ପ୍ରାପ୍ତି ଗୁରୁଙ୍କର ଅଧୀନ ନୁହେଁ

ଯାହାକୁ ଆମେ ପାଇବା ପାଇଁ ଇଚ୍ଛା କରୁଛେ, ସେହି ପରମାତ୍ମତତ୍ତ୍ୱ କୌଣସି ଗୋଟିଏ ସ୍ଥାନରେ ସୀମିତ ନୁହେଁ। ତାହା କାହାରି ଅଧୀନରେ ନାହିଁ; ଯଦି କାହାର ଅଧୀନରେ ଥାଏ, ତା'ହେଲେ ତାହା କଣ ବା ଆମକୁ କୃତାର୍ଥ କରିବ? ପରମାତ୍ମତତ୍ତ୍ୱ ପ୍ରତ୍ୟେକ ପ୍ରାଣୀକୁ ନିତ୍ୟପ୍ରାପ୍ତ। ପରମାତ୍ମତତ୍ତ୍ୱ ଜାଣିଥିବା ମହାତ୍ମାମାନେ କଦାପି ଗୁରୁ ହୁଅନ୍ତି ନାହିଁ କିମ୍ବା କାହାଠାରୁ ଫିସ୍ (ଭେଟି) ନିଅନ୍ତି ନାହିଁ। ସେ ଖୋଲାଖୋଲି ଭାବରେ ସମସ୍ତଙ୍କୁ ଉପଦେଶ ଦିଅନ୍ତି। ଯେଉଁମାନେ ଗୁରୁ ହେଉ ନାହାନ୍ତି, ସେମାନେ ତତ୍ତ୍ୱ ବିଷୟରେ ଯେପରି କହି ପାରିବେ, ଗୁରୁ ହେଉଥିବା ଲୋକେ ତତ୍ତ୍ୱ ବିଷୟରେ ସେପରି କହି ପାରିବେ ନାହିଁ।

ସଉଦା କରୁଥିବା ବ୍ୟକ୍ତି ଗୁରୁ ନୁହନ୍ତି। ଯେଉଁମାନେ କହନ୍ତି ଯେ, ଆଗ ଆମର ଶିଷ୍ୟ ହୋଇଯାଅ, ତା'ପରେ ଆମେ ଭଗବତ୍‌ପ୍ରାପ୍ତିର ମାର୍ଗ ବିଷୟରେ କହିବୁ, ସେମାନେ ସତେ ଯେପରି ଭଗବାନଙ୍କୁ ବିକ୍ରୀ କରୁଛନ୍ତି। ଏହା ଏକ ସିଦ୍ଧାନ୍ତ ଯେ କୌଣସି ବସ୍ତୁ ଯେତିକି ମୂଲ୍ୟରେ ମିଳେ, ତାହାର ପ୍ରକୃତ ମୂଲ୍ୟ ସେହି ମୂଲ୍ୟଠାରୁ ନିଶ୍ଚିତଭାବରେ କମ୍ ହୋଇଥାଏ। ଯଦି ଗୋଟିଏ ଘଣ୍ଟା ଶହେ ଟଙ୍କାରେ ମିଳୁଥାଏ, ତେବେ ଦୋକାନୀ ତାହାକୁ ଶହେ ଟଙ୍କା ଦେଇ କିଣି ନ ଥାଏ। ଯଦି ଗୁରୁ ବଳାପରେ ହିଁ କୌଣସି ବସ୍ତୁ ମିଳିବ, ତାହା ନିଶ୍ଚିତଭାବରେ ଗୁରୁଙ୍କ ଠାରୁ କମ୍ ମୂଲ୍ୟର ହୋଇଥିବ ଅର୍ଥାତ୍ ଗୁରୁଙ୍କ ଠାରୁ ହୀନ ହୋଇଥିବ। ପୁଣି ତାହା ସାହାଯ୍ୟରେ ଆମକୁ ଭଗବାନ ମିଳିବେ କିପରି? ଭଗବାନ ଅମୂଲ୍ୟ। ଅମୂଲ୍ୟ ବସ୍ତୁ ପ୍ରକୃତରେ ବିନା ମୂଲ୍ୟରେ ମିଳେ ଏବଂ ଯାହା ମୂଲ୍ୟ ଦେଇ ମିଳେ, ତାହା ମୂଲ୍ୟ ଅପେକ୍ଷା ହୀନ ହୋଇଥାଏ। ତେଣୁ

ଯଦି କେହି କହୁଥାଏ ଯେ ''ଆଗ ମୋର ଶିଷ୍ୟ ହୋଇଯାଅ, ତା'ପରେ ଉପଦେଶ ଦେବି'', ସେଠାରେ ଦୂରରୁ ହାତ ଯୋଡ଼ି ନମସ୍କାର କରିବା ଉଚିତ। ବୁଝିବା ଉଚିତ ଯେ ଏ ଜଣେ କାଳନେମି ରାକ୍ଷସ! ନକଲି ଗୁରୁ ସାଜିଥିବା କାଳନେମି ରାକ୍ଷସ ହନୁମାନଙ୍କୁ କହିଥିଲା—

**ସର ମଜ୍ଜନ କରି ଆତୁର ଆୱହୁ। ଦିଚ୍ଛା ଦେଉଁ ଗ୍ୟାନ ଜେହିଁ ପାୱହୁ ॥**

(ମାନସ, ଲଙ୍କା। ୫୭। ୪)

[ଅର୍ଥ—''ଯଥାଶୀଘ୍ର ସରୋବରରେ ସ୍ନାନ କରି ଆସ, ତା'ପରେ ମୁଁ ତୁମକୁ ଯେପରି ଜ୍ଞାନ ଲାଭ ହେବ ସେପରି ଦୀକ୍ଷା ଦେବି।] ତା'ର କପଟ ଜଣାପଡ଼ିଯିବାରୁ ହନୁମାନ କହିଲେ, ''ଆଗ ମୋ'ଠାରୁ ଗୁରୁଦକ୍ଷିଣା ନିଅ ତା'ପରେ ମନ୍ତ୍ରଦେବ''। ଏହା କହି ହନୁମାନ ତାକୁ ଲାଙ୍ଗୁଡ଼ରେ ଗୁଡ଼ାଇ କଚାଡ଼ିଦେଲେ!

□□□

# କଲ୍ୟାଣପ୍ରାପ୍ତିରେ ନିଜର ନିଷ୍ଠା ହିଁ କାରଣ

ଭଗବାନ ଗୀତାରେ ସ୍ପଷ୍ଟଭାବରେ କହିଛନ୍ତି—

**ଉଦ୍ଧରେଦାତ୍ମନାତ୍ମାନଂ ନାତ୍ମାନମବସାଦୟେତ୍ ।**
**ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ ॥**

(୬।୫)

''ନିଜ ଦ୍ୱାରା ନିଜର ଉଦ୍ଧାର କର, ନିଜର ପତନ ନ କର; କାରଣ ନିଜେ ହିଁ ନିଜର ମିତ୍ର ଓ ନିଜେ ହିଁ ନିଜର ଶତ୍ରୁ ।''

ତାତ୍ପର୍ଯ୍ୟ ହେଲା, ନିଜର ଉଦ୍ଧାର ଓ ପତନ କରିବାରେ ମନୁଷ୍ୟ ନିଜେ ହିଁ କାରଣ ହୁଏ, ଅନ୍ୟ କେହି କାରଣ ହୁଏ ନାହିଁ। ଭଗବାନ ମନୁଷ୍ୟଶରୀର ଦେଇଛନ୍ତି ମାନେ ଆତ୍ମକଲ୍ୟାଣର ସମସ୍ତ ସାମଗ୍ରୀ ମଧ୍ୟ ପୂର୍ଣ୍ଣରୂପେ ଦେଇଛନ୍ତି। ତେଣୁ ଆତ୍ମକଲ୍ୟାଣ ପାଇଁ ଅନ୍ୟର ଆବଶ୍ୟକତା ନାହିଁ।

ଗୁରୁ, ସନ୍ଥ ଓ ଭଗବାନଙ୍କ ପ୍ରତି ମନୁଷ୍ୟ ନିଜେ ଯେତେବେଳେ ଶ୍ରଦ୍ଧା ଓ ବିଶ୍ୱାସ କରେ, ସେମାନଙ୍କୁ ସ୍ୱୀକାର କରେ, ସେମାନଙ୍କର ସମ୍ମୁଖ ହୁଏ, ସେମାନଙ୍କ ଆଜ୍ଞା ପାଳନ କରେ, ସେତେବେଳେ ଯାଇ ସେମାନେ ଉଦ୍ଧାର କରନ୍ତି। ମନୁଷ୍ୟ ଯଦି ସେମାନଙ୍କୁ ସ୍ୱୀକାର ନ କରେ, ତେବେ ସେମାନେ ଉଦ୍ଧାର କରିବେ ବା କିପରି? ଆଦୌ କରି ପାରିବେ ନାହିଁ। ନିଜେ ଶିଷ୍ୟ ନ ହେଲେ ଗୁରୁ କଣ କରିବେ? ଅନ୍ୟ କେହି ଖାଇବାକୁ ଦେଇଦେବ ସିନା, କିନ୍ତୁ ନିଜକୁ ତ ଭୋକ ଲାଗୁଥିବା ଦରକାର ! ନିଜର ଭୋକ ନ ଥିଲେ କେହି ଯେତେ ଭଲ ଖାଇବା ଜିନିଷ ଦେଲେ ମଧ୍ୟ ତାହା କି କାମରେ ଆସିବ? ସେହିପରି ନିଜର ନିଷ୍ଠା ନ ଥିଲେ ଗୁରୁ ଓ ସନ୍ଥମହାତ୍ମାଙ୍କର ଉପଦେଶ କି କାମରେ ଆସିବ?

ଗୁରୁ, ସନ୍ତ ଓ ଭଗବାନ ସଦାସର୍ବଦା ବିଦ୍ୟମାନ ଥାଆନ୍ତି । ପୂର୍ବରୁ ଅନେକ ଉଚ୍ଚସ୍ତରର ସନ୍ତ, ଆଚାର୍ଯ୍ୟ ଓ ଗୁରୁ ହୋଇ ସାରିଛନ୍ତି, ଭଗବାନ ମଧ୍ୟ ଅନେକ ଅବତାର ଧାରଣ କରି ସାରିଲେଣି, କିନ୍ତୁ ଆଜି ପର୍ଯ୍ୟନ୍ତ ଆମର ଉଦ୍ଧାର ହୋଇ ନାହିଁ! ଏଥିରୁ ପ୍ରମାଣିତ ହେଉଛି ଯେ ଆମେ ସେମାନଙ୍କୁ ସ୍ୱୀକାର କରି ନାହୁଁ । ସୁତରାଂ ଆମର ଉଦ୍ଧାର ଓ ପତନରେ ଆମେ ନିଜେ ହିଁ କାରଣ । ନିଜର ଉଦ୍ଧାର ଓ ପତନରେ ଯିଏ ଅନ୍ୟକୁ କାରଣ ମନେକରେ, ତା'ର ଉଦ୍ଧାର କଦାପି ସମ୍ଭବ ନୁହେଁ ।

ବାସ୍ତବରେ ମନୁଷ୍ୟ ନିଜେ ହିଁ ନିଜର ଗୁରୁ—**'ଆତ୍ମନୋ ଗୁରୁରାତ୍ମୈବ ପୁରୁଷସ୍ୟ ବିଶେଷତଃ'** (ଶ୍ରୀମଦ୍ଭା. ୧୧ । ୭ । ୨୦) । ତେଣୁ ନିଜେ ହିଁ ନିଜକୁ ଉପଦେଶ ଦେବା ଉଚିତ । ଅନ୍ୟମାନଙ୍କ ଠାରେ ନ୍ୟୂନତା ନ ଦେଖି ନିଜଠାରେ ହିଁ ନ୍ୟୂନତା ଦେଖନ୍ତୁ ଏବଂ ତାହାକୁ ଦୂର କରିବାକୁ ଚେଷ୍ଟା କରନ୍ତୁ । ନିଜେ ନିଜର ଗୁରୁ ହୁଅନ୍ତୁ, ନିଜେ ନିଜର ନେତା ହୁଅନ୍ତୁ ଏବଂ ନିଜେ ନିଜର ଶାସକ ହୁଅନ୍ତୁ । ତାତ୍ପର୍ଯ୍ୟ ହେଲା, କଲ୍ୟାଣ ବାସ୍ତବରେ ଗୁରୁଙ୍କ ଦ୍ୱାରା ହୁଏ ନାହିଁ କି ଈଶ୍ୱରଙ୍କ ଦ୍ୱାରା ହୁଏ ନାହିଁ, ବରଂ ନିଜ ଭିତରେ ପ୍ରକୃତ ନିଷ୍ଠା ଜାଗ୍ରତ ହେଲେ କଲ୍ୟାଣ ହୁଏ । ନିଜର ନିଷ୍ଠା ନ ଥିଲେ ଭଗବାନ ମଧ୍ୟ ଆମର କଲ୍ୟାଣ କରି ପାରିବେ ନାହିଁ । ଯଦି କରି ଦେଉଥାଆନ୍ତେ, ତେବେ ଆଜି ପର୍ଯ୍ୟନ୍ତ ଆମେ କଲ୍ୟାଣପ୍ରାପ୍ତିରୁ ବଞ୍ଚିତ ହୋଇ ରହି ନ ଥାଆନ୍ତେ! ଅନେକ ଗୁରୁ ଅଛନ୍ତି, ଅନେକ ସନ୍ତମହାତ୍ମା ଅଛନ୍ତି, ଭଗବାନ ମଧ୍ୟ ସର୍ବଦା ଓ ସର୍ବତ୍ର ବିଦ୍ୟମାନ, କିନ୍ତୁ ଆମର ନିଷ୍ଠା ନାହିଁ । କଲ୍ୟାଣପ୍ରାପ୍ତି ଗୁରୁଙ୍କର ଅଧୀନ ନୁହେଁ, ସନ୍ତମହାତ୍ମାଙ୍କର ଅଧୀନ ନୁହେଁ କିମ୍ବା ଭଗବାନଙ୍କର ମଧ୍ୟ ଅଧୀନ ନୁହେଁ, ଏହା ସ୍ୱୟଂର ହିଁ ଅଧୀନ । ଯଦି ଆମର ଇଚ୍ଛା ବା ନିଷ୍ଠା ବିନା ସର୍ବଶକ୍ତିମାନ୍ ଭଗବାନ ମଧ୍ୟ ଆମର

କଲ୍ୟାଣ କରି ପାରନ୍ତି ନାହିଁ, ତେବେ ଛାର ମନୁଷ୍ୟର କେତେ ଶକ୍ତି ଯେ ସେ ଆମର କଲ୍ୟାଣ କରିଦେବ? ଯଦି ଆମର କଲ୍ୟାଣରେ ନିଷ୍ଠା ନାହିଁ, ତେବେ ଲକ୍ଷ ଲକ୍ଷ, କୋଟି କୋଟି ଗୁରୁ କରିଲେ ବି କଲ୍ୟାଣ ହେବ ନାହିଁ। ହୃଦୟରେ ପ୍ରକୃତ ନିଷ୍ଠା ଥିଲେ ଗୁରୁ ମଧ୍ୟ ମିଳିଯିବେ, ସନ୍ଥ ମଧ୍ୟ ମିଳିଯିବେ, ଭଗବାନ ମଧ୍ୟ ମିଳିଯିବେ, ସଦ୍‌ଗ୍ରନ୍ଥ ମଧ୍ୟ ମିଳିଯିବ ଓ ଜ୍ଞାନ ମଧ୍ୟ ମିଳିଯିବ। କେମିତି ମିଳିବ ତାହା ଭଗବାନଙ୍କୁ ଜଣା! ଫଳ ପାଚିଗଲେ ଶୁଆ ଆପେ ଆପେ ଆସି ଥଣ୍ଟ ମାରେ। ସେହିପରି ଆମେ ପ୍ରକୃତ ଶିଷ୍ୟ ହୋଇଗଲେ ପ୍ରକୃତ ଗୁରୁ ନିଜେ ଆମ ପାଖକୁ ଆସିଯିବେ। ଶିଷ୍ୟ ପାଇଁ ଗୁରୁ ଯେତେ ଆବଶ୍ୟକ, ଗୁରୁଙ୍କ ପାଇଁ ଶିଷ୍ୟ ତା'ଠାରୁ ଅଧିକ ଆବଶ୍ୟକ! ଯଦି ଆମର ପ୍ରକୃତ ନିଷ୍ଠା ଥାଏ, ତେବେ କୌଣସି କପଟୀ ଗୁରୁ ମିଳିଗଲେ ମଧ୍ୟ ଭଗବାନ ତା'କବଳରୁ ମୁକ୍ତ କରାଇ ଦେବେ। କେହି ଆମକୁ ଅଟକାଇ ରଖି ପାରିବ ନାହିଁ। ଏହା ଏକ ନିୟମ ଯେ, ଯାହା ହୃଦୟରେ ନିଜର ଉଦ୍ଧାର ପାଇଁ ନିଷ୍ଠା ଥାଏ, ସେ କେଉଁଠି ଅଟକିଯାଏ (ବାନ୍ଧି ହୋଇଯାଏ) ନାହିଁ। ପ୍ରକୃତ ଜିଜ୍ଞାସୁକୁ ଉତ୍ତମ ସଙ୍ଗ ମିଳିଗଲେ ସେ ତାହାକୁ ତତ୍କାଳ ଗ୍ରହଣ କରେ।

ଆପଣ ଯଦି ନିଜର ଉଦ୍ଧାର ଚାହୁଁଛନ୍ତି, ତେବେ ସେଥିରେ କିଏ ବା ବାଧା ଦେଇ ପାରିବ? ଆପଣ ଯଦି ଉଦ୍ଧାର ଚାହୁଁ ନାହାନ୍ତି, ତେବେ କିଏ ବା ଉଦ୍ଧାର କରି ପାରିବ? ଗୁରୁ ଓ ସନ୍ଥ ଯେତେ ଭଲ ହୋଇଥିଲେ ବି ଆପଣଙ୍କର ଇଚ୍ଛା ବିନା କେହି ଆପଣଙ୍କର ଉଦ୍ଧାର କରି ପାରିବେ ନାହିଁ। ଆପଣ ଯଦି ଆତ୍ମୋଦ୍ଧାର ପାଇଁ ପ୍ରସ୍ତୁତ ହୋଇଯାଆନ୍ତି, ତେବେ କେବଳ ସନ୍ଥମହାତ୍ମା ନୁହନ୍ତି, ଏପରି କି ଚୋର ଓ ଡାକୁମାନେ ମଧ୍ୟ ଆପଣଙ୍କୁ ସାହାଯ୍ୟ କରିବେ, ଦୁଷ୍ଟଲୋକେ ମଧ୍ୟ ଆପଣଙ୍କର ସେବା କରିବେ, ସିଂହ, ସର୍ପ ପ୍ରଭୃତି ମଧ୍ୟ ଆପଣଙ୍କର ସେବା

କରିବେ । କେବଳ ସେତିକି ନୁହେଁ, ସମଗ୍ର ଦୁନିଆ ଆପଣଙ୍କର ସେବା କରିବ । ମୁଁ କେତେଥର ଦେଖିଛି ଯେ, ମନପ୍ରାଣ ଦେଇ ହୃଦୟର ସହ ଭଗବତ୍‌ପରାୟଣ ହୋଇଥିବା ବ୍ୟକ୍ତିକୁ ଯଦି କେହି ଦୁଃଖ ଦିଏ, ସେହି ଦୁଃଖ ମଧ୍ୟ ତା'ର ଉନ୍ନତିରେ ସହାୟକ ହୁଏ । ଦୁଃଖ ଦେଉଥିବା ଲୋକ ତ ଦୁଃଖ ଦେବା ଭାବନାରେ କାର୍ଯ୍ୟ କରୁଥାଏ, କିନ୍ତୁ ଦୁଃଖ ପାଉଥିବା ଲୋକର ମଙ୍ଗଳ ହିଁ ହୁଏ । କେବଳ ଏତିକି ନୁହେଁ, ଭଗବାନଙ୍କୁ ମାନୁ ନ ଥିବା ବ୍ୟକ୍ତିର ଯଦି ଆତ୍ମକଲ୍ୟାଣ ପାଇଁ ନିଷ୍ଠା ଜାଗ୍ରତ ହୁଏ, ତା'ର ମଧ୍ୟ କଲ୍ୟାଣ ହୋଇଯାଏ ।

ଧନୀଲୋକେ ଘର କାମ ପାଇଁ ଚାକର ରଖନ୍ତି, ଠାକୁର ପୂଜା ପାଇଁ ବ୍ରାହ୍ମଣଙ୍କୁ ନିଯୁକ୍ତ କରିଦିଅନ୍ତି, କିନ୍ତୁ ଭୋଜନ କରିବା ଓ ଔଷଧ ସେବନ କରିବା ପାଇଁ କୌଣସି ଚାକର ବା ବ୍ରାହ୍ମଣକୁ ନିଯୁକ୍ତ କରନ୍ତି ନାହିଁ । ଭୋକ ଲାଗିଲେ ନିଜକୁ ହିଁ ଭୋଜନ କରିବାକୁ ପଡ଼ିବ । ରୋଗ ହେଲେ ନିଜକୁ ହିଁ ଔଷଧ ସେବନ କରିବାକୁ ପଡ଼ିବ । ଯଦି ନିଜେ ଭୋଜନ କଲେ ଯାଇ କ୍ଷୁଧା ନିବାରଣ ହୁଏ, ନିଜେ ଔଷଧ ସେବନ କଲେ ରୋଗ ଚାଲିଯାଏ, ତା'ହେଲେ ନିଜର ନିଷ୍ଠା ବିନା କଲ୍ୟାଣ ହୋଇଯିବ କିପରି? ଆପଣମାନେ ତତ୍ପରତାର ସହ ଭଗବାନଙ୍କ ଠାରେ ସଂଯୁକ୍ତ ହୋଇ ରହିଲେ ଗୁରୁ, ସନ୍ଥ, ଭଗବାନ ସମସ୍ତେ ଆପଣମାନଙ୍କୁ ସହାୟତା କରିବା ପାଇଁ ପ୍ରସ୍ତୁତ । ମାତ୍ର ନିଜକୁ ହିଁ ନିଜର କଲ୍ୟାଣ କରିବାକୁ ପଡ଼ିବ । ତେଣୁ ଗୁରୁ ଆମର କଲ୍ୟାଣ କରିଦେବେ—ଏହା କେବଳ ଆତ୍ମପ୍ରତାରଣା ଛଡ଼ା ଆଉ କିଛି ନୁହେଁ ।

ମାଆ ଯେତେ ଦୟାଳୁ ହୋଇଥିଲେ ବି ଆପଣଙ୍କର ଭୋକ ନ ଥିଲେ ସେ ଖୁଆଇ ଦେବ କିପରି? ସେହିପରି ଆପଣଙ୍କର ଆତ୍ମକଲ୍ୟାଣ ପାଇଁ ଉତ୍କଣ୍ଠା ନ ଥିଲେ ଭଗବାନ ପରମ ଦୟାଳୁ ହୋଇଥିଲେ ବି କ'ଣ କରିବେ? ବସ୍ତ୍ରହରଣ ସମୟରେ ଦ୍ରୌପଦୀ ଭଗବାନଙ୍କୁ ଡାକିବାରୁ

ଭଗବାନ ବସ୍ତ୍ରରୂପ ଧାରଣ କରି ଆବିର୍ଭୂତ ହେଲେ । ମାତ୍ର ଜୁଆଖେଳରେ ହାରିଯାଇ ସୁଦ୍ଧା ଯୁଧିଷ୍ଠିର ଭଗବାନଙ୍କୁ ଡାକିଲେ ନାହିଁ, ପୁଣି ଭଗବାନ ଆସିଥାଆନ୍ତେ ବା କିପରି? ଯୁଧିଷ୍ଠିର ତେର ବର୍ଷ ଧରି ବଣରେ ଦୁଃଖ ପାଇଲେ । ଦିନେ କୁନ୍ତୀମାତା ଭଗବାନଙ୍କୁ କହିଲେ, ''କହ୍ନେଇ! ପାଣ୍ଡବଙ୍କ ପ୍ରତି ତୋ'ର କଣ ଟିକିଏ ଦୟା ନାହିଁ?'' ଭଗବାନ କହିଲେ, ''ମୁଁ କଣ ବା କରିବି, ଯୁଧିଷ୍ଠିର ଜୁଆଖେଳରେ ରାଜ୍ୟ, ଧନସମ୍ପତ୍ତି ଆଦି ସବୁକିଛି ବାଜି ଲଗାଇଦେଲେ, କିନ୍ତୁ ମୋତେ ଟିକେ ସ୍ମରଣ ବି କଲେ ନାହିଁ!''

□□□

# ଭଗବାନ ସମସ୍ତଙ୍କର ଗୁରୁ

ଭଗବାନ ଜଗତର ଗୁରୁ—

**'କୃଷ୍ଣଂ ବନ୍ଦେ ଜଗଦ୍‌ଗୁରୁମ୍'**

ରାମଚରିତମାନସରେ ମଧ୍ୟ ଅଛି—

**'ଜଗଦ୍‌ଗୁରୁଂ ଚ ଶାଶ୍ୱତମ୍'** (ଅରଣ୍ୟ. ୪ । ୯)

ସେ କେବଳ ଗୁରୁ ନୁହନ୍ତି, ଗୁରୁମାନଙ୍କର ମଧ୍ୟ ପରମ ଗୁରୁ—

**'ସ ଈଶଃ ପରମୋ ଗୁରୋର୍ଗୁରୁଃ'** (ଶ୍ରୀମଭା. ୮ । ୨୪ । ୪୮)

**'ତ୍ୱମସ୍ୟ ପୂଜ୍ୟଶ୍ଚ ଗୁରୁର୍ଗରୀୟାନ୍'** (ଗୀତା ୧୧ । ୪୩)

ରାଜା ସତ୍ୟବ୍ରତ ଭଗବାନଙ୍କୁ କହିଛନ୍ତି—

**ଅଚକ୍ଷୁରନ୍ଧସ୍ୟ ଯଥାଗ୍ରଣୀଃ କୃତ-**
**ସ୍ତଥା ଜନସ୍ୟାବିଦୁଷୋଽବୁଧୋ ଗୁରୁଃ ।**
**ତ୍ୱମର୍କଦୃକ୍ ସର୍ବଦୃଶାଂ ସମୀକ୍ଷଣୋ**
**ବୃତୋ ଗୁରୁର୍ନଃ ସ୍ୱଗତିଂ ବୁଭୁତ୍ସତାମ୍ ॥**

(ଶ୍ରୀମଭା. ୮ । ୨୪ । ୫୦)

"ଜଣେ ଅନ୍ଧ ଆଉ ଜଣେ ଅନ୍ଧକୁ ନିଜର ପଥପ୍ରଦର୍ଶକ କଲା ପରି, ଅଜ୍ଞାନୀ ଜୀବ ଅଜ୍ଞାନୀକୁ ହିଁ ନିଜର ଗୁରୁ କରନ୍ତି । ଆପଣ ସୂର୍ଯ୍ୟଙ୍କ ପରି ସ୍ୱୟଂପ୍ରଭ ଓ ସମସ୍ତ ଇନ୍ଦ୍ରିୟଙ୍କର ପ୍ରେରକ । ଆମେ ସବୁ ଆତ୍ମତତ୍ତ୍ୱର ଜିଜ୍ଞାସୁମାନେ ଆପଣଙ୍କୁ ହିଁ ଗୁରୁରୂପରେ ବରଣ କରୁଛୁ ।"

ଭକ୍ତଶ୍ରେଷ୍ଠ ପ୍ରହ୍ଲାଦ କହିଛନ୍ତି—

**ଶାସ୍ତା ବିଷ୍ଣୁରଶେଷସ୍ୟ ଜଗତୋ ଯୋ ହୃଦି ସ୍ଥିତଃ ।**
**ତମୃତେ ପରମାତ୍ମାନଂ ତାତ କଃ କେନ ଶାସ୍ୟତେ ॥**

(ବିଷ୍ଣୁପୁରାଣ ୧ । ୧୭ । ୨୦)

"ହୃଦୟସ୍ଥ ବିଷ୍ଣୁ ହିଁ ସମଗ୍ର ଜଗତର ଉପଦେଷ୍ଟା ଅଟନ୍ତି । ହେ ତାତ! ସେହି ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଏ କାହାକୁ କିଛି ଶିଖାଇ ପାରେ କି? ନା, ଆଦୌ ସମ୍ଭବ ନୁହେଁ ।"

ଭଗବାନ ଜଗତର ଗୁରୁ ଏବଂ ଆମ୍ଭେମାନେ ମଧ୍ୟ ଜଗତର ଅନ୍ତର୍ଗତ । ତେଣୁ ବାସ୍ତବରେ ଆମ୍ଭେମାନେ ଗୁରୁବିହୀନ ନୋହୁଁ । ଆମ୍ଭେମାନେ ପ୍ରକୃତ ପରମ ଗୁରୁଙ୍କର ଶିଷ୍ୟ । କଳିଯୁଗର ଗୁରୁ ବଡ଼ ବିପଜ୍ଜନକ, କିନ୍ତୁ ଜଗଦ୍‌ଗୁରୁ ଭଗବାନଙ୍କ ନିକଟରେ ବିପଦର ସ୍ଥାନ ନାହିଁ! ତାଙ୍କଠାରୁ କେବଳ ଲାଭ ହିଁ ମିଳେ, କ୍ଷତିର ପ୍ରଶ୍ନ ନାହିଁ । ତେଣୁ ଭଗବାନଙ୍କୁ ଗୁରୁରୂପେ ସ୍ୱୀକାର କରି ତାଙ୍କର ଉପଦେଶ ଗ୍ରନ୍ଥ ଗୀତାକୁ ପଢ଼ିଲେ ଏବଂ ତଦନୁସାରେ ଜୀବନ ଗଠନ କଲେ ଆମର କଲ୍ୟାଣ (ଉଦ୍ଧାର) ସୁନିଶ୍ଚିତ । କୃଷ୍ଣ, ରାମ, ଶିବ, ହନୁମାନ, ଗଣେଶ, ସୂର୍ଯ୍ୟ ଆଦିଙ୍କ ମଧ୍ୟରୁ ଯାହାଙ୍କୁ ବି ଗୁରୁରୂପେ ଆମେ ସ୍ୱୀକାର କରି ପାରିବା । ଗଜେନ୍ଦ୍ର କହିଥିଲା—

**ଯଃ କଶ୍ଚନେଶୋ ବଲିନୋଽନ୍ତକୋରଗାତ୍**
**ପ୍ରଚଣ୍ଡବେଗାଦଭିଧାବତୋ ଭୃଶମ୍ ।**
**ଭୀତଂ ପ୍ରପନ୍ନଂ ପରିପାତି ଯଦ୍ଭୟା-**
**ନ୍ମୃତ୍ୟୁଃ ପ୍ରଧାବତ୍ୟରଣଂ ତମୀମହି ।।**

(ଶ୍ରୀମଦ୍‌ଭା. ୮ । ୨ । ୩୩)

"ପ୍ରଚଣ୍ଡ ବେଗରେ ଧାବମାନ ଓ ଅତ୍ୟନ୍ତ ବଳବାନ୍ କାଳରୂପୀ ସର୍ପଠାରୁ ଭୀତତ୍ରସ୍ତ ହୋଇଥିବା ଶରଣାଗତକୁ ଯେଉଁ ଈଶ୍ୱର ରକ୍ଷା କରନ୍ତି ଏବଂ ଯାହାଙ୍କ ଭୟରେ ମୃତ୍ୟୁ ମଧ୍ୟ ଧାବମାନ ହେଉଥାଏ, ମୁଁ ତାଙ୍କଠାରେ ଶରଣ ପଶୁଛି ।"

ଗଜେନ୍ଦ୍ରର କହିବାର ଅଭିପ୍ରାୟ ହେଲା, ଈଶ୍ୱର କିପରି, ତାଙ୍କର ନାମ କ'ଣ, ସେସବୁ ମୁଁ ଜାଣେ ନାହିଁ, କିନ୍ତୁ ଈଶ୍ୱର ବୋଲି ଜଣେ କେହି ଅଛନ୍ତି, ମୁଁ ତାଙ୍କ ନିକଟରେ ଶରଣ ପଶୁଛି । ଏହିପରି ଭାବରେ ଆମେ ମଧ୍ୟ ଈଶ୍ୱରଙ୍କର ଶରଣାପନ୍ନ ହୋଇଗଲେ ସେ ଆମ ପାଇଁ ଗୁରୁ ପଠାଇ ଦେବେ ଅଥବା ନିଜେ ହିଁ ଗୁରୁ ହୋଇଯିବେ ।

ଆମେ ଭଗବାନଙ୍କର ଅଂଶ—**'ମମୈବାଂଶୋ ଜୀବଲୋକେ'** (ଗୀତା ୧୫ । ୭); ତେଣୁ ସେ ହିଁ ଆମର ଗୁରୁ, ମାତା, ପିତା ସବୁକିଛି ଅଟନ୍ତି ।

ବାସ୍ତବରେ ଗୁରୁଙ୍କ ସହିତ ସମ୍ବନ୍ଧ ନ କରି ଭଗବାନଙ୍କ ସହିତ ସମ୍ବନ୍ଧ କରିବା ଆମ ପକ୍ଷେ ବାଞ୍ଛନୀୟ୍ । ଯେ ଭଗବାନଙ୍କ ସହିତ ଆମର ସମ୍ବନ୍ଧ କରାଇ ଦିଅନ୍ତି, ସେ ହିଁ ପ୍ରକୃତ ଗୁରୁ । ଭଗବାନଙ୍କ ସହିତ ସମ୍ବନ୍ଧ କରିବା ପାଇଁ କାହାରି ପରାମର୍ଶ ନେବାର ଆବଶ୍ୟକତା ନାହିଁ। ଭଗବାନଙ୍କ ସହିତ ଜୀବମାତ୍ରଙ୍କେ ସମ୍ବନ୍ଧ ରହିଛି । କୌଣସି ମଧ୍ୟସ୍ଥର ପ୍ରୟୋଜନ ନାହିଁ। ଆମେ ଆଗ ଗୁରୁ କରିବା ଏବଂ ଗୁରୁ ଭଗବାନଙ୍କ ସହିତ ସମ୍ବନ୍ଧ କରାଇଦେବେ—ଏହାଦ୍ୱାରା ଭଗବାନ ଆମଠାରୁ ଏକ ପିଢ଼ି ଦୂରେଇଯିବେ! ଆମେ ସ୍ୱତନ୍ତ୍ରଭାବରେ ଭଗବାନଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିନେଲେ ମଝିରେ ଅନ୍ୟ କୌଣସି ମଧ୍ୟସ୍ଥର ଆବଶ୍ୟକତା ରହିବ ନାହିଁ । ଆମେ ଇଚ୍ଛା ନ କରୁଥିଲେ ମଧ୍ୟ ମୁକ୍ତି ଛାଏଁ ହୋଇଯିବ—

**ଅତି ଦୁର୍ଲଭ କୈବଲ୍ୟ ପରମ ପଦ । ସଂତ ପୁରାନ ନିଗମ ଆଗମ ବଦ ।।**
**ରାମ ଭଜତ ସୋଇ ମୁକୁତି ଗୋସାଈଁ । ଅନଇଚ୍ଛିତ ଆୱଇ ବରିଆଈଁ ।।**

(ମାନସ, ଉତ୍ତର. ୧୧୯ । ୨)

ତେଣୁ ଭଗବାନ ଗୀତାରେ କହିଛନ୍ତି—

**ମନ୍ମନା ଭବ ମଦ୍ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।**

(ଗୀତା ୯ । ୩୪, ୧୮ । ୬୫)

"ତୁମେ ମୋର ଭକ୍ତ ହୁଅ, ମଦ୍‌ଗତମନା ହୁଅ, ମୋର ପୂଜକ ହୁଅ ଏବଂ ମୋତେ ନମସ୍କାର କର ।"

**ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।**

(ଗୀତା ୧୮ । ୬୬)

"ସମସ୍ତ ଧର୍ମର ଆଶ୍ରୟ ଛାଡ଼ି ତୁମେ କେବଳ ମୋର ଶରଣକୁ ଆସିଯାଅ ।"

ଭଗବାନ ନିଜେ ଗୁରୁ ନ ହୋଇ ତାଙ୍କର ଶରଣାଗତ ହେବା ପାଇଁ କହୁଛନ୍ତି ।



# ଜଗଦ୍‌ଗୁରୁ ଭଗବାନଙ୍କ ଉଦାରତା

ଭଗବାନଙ୍କ ଠାରେ ଅନନ୍ତ ଗୁଣ ନିହିତ । ଏ ସମସ୍ତ ଗୁଣର ସୀମା କେହି ପାଇ ପାରିବେ ନାହିଁ । ଆଜି ପର୍ଯ୍ୟନ୍ତ ଶାସ୍ତ୍ରମାନଙ୍କରେ ଭଗବାନଙ୍କ ଗୁଣ ବିଷୟରେ ଯେତେ ବର୍ଣ୍ଣନା ହୋଇଛି, ମହାତ୍ମାମାନେ ଯେତେ ବର୍ଣ୍ଣନା କରିଛନ୍ତି, ସେସବୁ ଏକତ୍ରିତ ହେଲେ ମଧ୍ୟ ଅପୂର୍ଣ୍ଣ । ଭଗବାନଙ୍କର ପରମଭକ୍ତ ଗୋସ୍ୱାମୀ ତୁଳସୀଦାସ ମଧ୍ୟ କହିଛନ୍ତି—**'ରାମୁ ନ ସକହିଁ ନାମ ଗୁନ ଗାଈ'** (ମାନସ, ବାଳ. ୨୬ । ୪) । ସନ୍ଥଙ୍କ ବାଣୀରେ ମଧ୍ୟ କଥିତ ଅଛି ଯେ, ଭଗବାନ ନିଜେ ମଧ୍ୟ ତାଙ୍କର ଶକ୍ତିକୁ ପୂର୍ଣ୍ଣରୂପେ ଜାଣନ୍ତି ନାହିଁ! ଏପରି ଅନନ୍ତ ଗୁଣସମ୍ପନ୍ନ ଭଗବାନଙ୍କ ଠାରେ ଅନ୍ତତଃ ତିନୋଟି ଗୁଣ ମୁଖ୍ୟରୂପେ ରହିଥାଏ—ସର୍ବଜ୍ଞତା, ସର୍ବସମର୍ଥତା ଓ ସର୍ବସୁହୃତ୍ତା । ତାତ୍ପର୍ଯ୍ୟ ହେଲା, ଭଗବାନଙ୍କ ଭଳି ସର୍ବଜ୍ଞ, ସର୍ବସମର୍ଥ ଓ ସର୍ବସୁହୃଦ୍ (ପରମ ଦୟାଳୁ) ଆଉ କେହି ନାହିଁ । ଏତାଦୃଶ ଭଗବାନ ବିଦ୍ୟମାନ ଥାଇ ମଧ୍ୟ ଆପଣମାନେ ଦୁଃଖ ପାଉଛନ୍ତି, ଆପଣମାନଙ୍କର ମୁକ୍ତି ହେଉ ନାହିଁ, ତେବେ କଣ ଗୁରୁ ଆପଣମାନଙ୍କୁ ମୁକ୍ତ କରାଇ ଦେବେ? ଗୁରୁ କଣ ଭଗବାନଙ୍କ ଠାରୁ ଅଧିକ ସର୍ବଜ୍ଞ, ଅଧିକ ସର୍ବଶକ୍ତିମାନ୍ ଓ ଅଧିକ ଦୟାଳୁ? କେବଳ ଠକାମି ଛଡ଼ା ଆଉ କିଛି ନୁହେଁ! ଯେପର୍ଯ୍ୟନ୍ତ ଆପଣଙ୍କ ହୃଦୟରେ ଆତ୍ମକଲ୍ୟାଣର ଲାଳସା ଜାଗ୍ରତ ହୋଇ ନାହିଁ, ସେପର୍ଯ୍ୟନ୍ତ ଭଗବାନ ମଧ୍ୟ ଆପଣଙ୍କର କଲ୍ୟାଣ କରି ପାରିବେ ନାହିଁ, ପୁଣି ଗୁରୁ କରିଦେବେ କିପରି?

ଆପଣଙ୍କୁ ଗୁରୁଙ୍କ ଠାରେ ଓ ସନ୍ଥମହାତ୍ମାଙ୍କ ଠାରେ ଯେଉଁ ବିଶେଷତ୍ୱ ପରିଲକ୍ଷିତ ହେଉଛି, ତାହା ମଧ୍ୟ ସେମାନଙ୍କର ନିଜର ବିଶେଷତ୍ୱ ନୁହେଁ, ବରଂ ତାହା ଭଗବାନଙ୍କ ଠାରୁ ଆସିଛି ଏବଂ ଆପଣ ତାହାକୁ

ସ୍ୱୀକାର କରିଛନ୍ତି । ଯେପରି କୌଣସି ମିଠା ଜାତୀୟ ଦ୍ରବ୍ୟରେ ଥିବା ମଧୁରତା କେବଳ ଚିନିର, ସେହିପରି ଯେଉଁଠାରେ କିଛି ବିଶେଷତ୍ୱ ପରିଲକ୍ଷିତ ହେଉଛି, ତାହା ଭଗବାନଙ୍କର । ଭଗବାନ ଗୀତାରେ କହିଛନ୍ତି—

**ଯଦ୍ ଯଦ୍ ବିଭୂତିମତ୍ସତ୍ତ୍ୱଂ ଶ୍ରୀମଦୂର୍ଜିତମେବ ବା ।**
**ତତ୍ତଦେବାବଗଚ୍ଛ ତ୍ୱଂ ମମ ତେଜୋଽଂଶସମ୍ଭବମ୍ ॥**

(୧୦ । ୪୧)

"ଯେଉଁ ଯେଉଁ ଐଶ୍ୱର୍ଯ୍ୟଯୁକ୍ତ, ଶୋଭାଯୁକ୍ତ ଓ ବଳଯୁକ୍ତ ପ୍ରାଣୀ ତଥା ପଦାର୍ଥ ଅଛନ୍ତି, ସେ ସମସ୍ତେ ମୋ ତେଜ(ଯୋଗ ବା ସାମର୍ଥ୍ୟ)ର ଅଂଶରୁ ହିଁ ଉତ୍ପନ୍ନ ହୋଇଛନ୍ତି ବୋଲି ଜାଣ ।"

ଭଗବାନଙ୍କୁ ବିରୋଧ କରୁଥିବା ରାକ୍ଷସମାନଙ୍କୁ ମଧ୍ୟ ଭଗବାନଙ୍କ ଠାରୁ ହିଁ ଶକ୍ତି ମିଳେ*, ତେବେ ଭଗବାନଙ୍କ ଭଜନ କରୁଥିବା ଲୋକଙ୍କୁ କଣ ଭଗବାନଙ୍କ ଠାରୁ ଶକ୍ତି ମିଳିବ ନାହିଁ? ଆପଣ ଭଗବାନଙ୍କର ସମ୍ମୁଖୀ ହୋଇଗଲେ କୋଟି କୋଟି ଜନ୍ମର ପାପ ନଷ୍ଟ ହୋଇଯିବ୳ । କିନ୍ତୁ ଆପଣ ମୂଳରୁ ସମ୍ମୁଖୀ ନ ହେଲେ ପାପ ନଷ୍ଟ ହେବ କିପରି? ଭଗବାନ ନିଜର ଶତ୍ରୁମାନଙ୍କୁ ମଧ୍ୟ ଶକ୍ତି ଦିଅନ୍ତି, ପ୍ରେମୀମାନଙ୍କୁ ମଧ୍ୟ ଶକ୍ତି ଦିଅନ୍ତି ଏବଂ ଉଦାସୀନମାନଙ୍କୁ ମଧ୍ୟ ଶକ୍ତି ଦିଅନ୍ତି । ଭଗବାନଙ୍କ ଦ୍ୱାରା ସୃଷ୍ଟ ପୃଥିବୀ ଦୁଷ୍ଟ, ସଜ୍ଜନ, ଆସ୍ତିକ, ନାସ୍ତିକ, ପାପୀ, ପୁଣ୍ୟାତ୍ମା ସମସ୍ତଙ୍କୁ ରହିବା ପାଇଁ ସ୍ଥାନ ଦିଏ । ତାଙ୍କ ଦ୍ୱାରା ସୃଷ୍ଟ

---

* ହନୁମାନ ରାବଣକୁ କହିଛନ୍ତି—

ଜାକେ ବଲ ଲୱଲେସ ତେଁ ଜିତେହୁ ଚରାଚର ଝାରି ।
ତାସୁ ଦୂତ ମୈଁ ଜା କରି ହରି ଆନେହୁ ପ୍ରିୟ ନାରି ।।

(ମାନସ, ସୁନ୍ଦର. ୨୧)

୳ ସନମୁଖ ହୋଇ ଜୀୱ ମୋହି ଜବହୀଁ । ଜନ୍ମ କୋଟି ଅଘ ନାସହିଁ ତବହୀଁ ।।

(ମାନସ, ସୁନ୍ଦର. ୪୪ । ୧)

ଅନ୍ନ ସମସ୍ତଙ୍କର କ୍ଷୁଧା ନିବାରଣ କରେ, ଜଳ ସମସ୍ତଙ୍କର ତୃଷା ମେଣ୍ଟାଏ, ବାୟୁ ସମସ୍ତଙ୍କ ଶ୍ୱାସପ୍ରଶ୍ୱାସରେ ପ୍ରବାହିତ ହୁଏ । ଅତ୍ୟନ୍ତ ଦୁଷ୍ଟ ଓ ଅତ୍ୟନ୍ତ ପାପୀ ପାଇଁ ମଧ୍ୟ ଭଗବାନଙ୍କର ଦୟାଳୁତା ସମାନ । ଆମେ ଘରେ ଗୋଟିଏ ବିଜୁଳି ବତି ଜଳାଇଲେ ସେଥିପାଇଁ ପଇସା ଦେବାକୁ ପଡ଼େ, କିନ୍ତୁ ଭଗବାନଙ୍କ ଦ୍ୱାରା ସୃଷ୍ଟ ସୂର୍ଯ୍ୟ ଓ ଚନ୍ଦ୍ର କେବେ କାହାକୁ ପଇସା ମାଗନ୍ତି କି? ଘରେ ଗୋଟିଏ ପାଣିକଳ ଲଗାଇଲେ ପଇସା ଦେବାକୁ ପଡ଼େ, କିନ୍ତୁ ଭଗବାନଙ୍କ ସୃଷ୍ଟ ନଦନଦୀ ଦିନରାତି ଚବିଶ ଘଣ୍ଟା ପ୍ରବାହିତ ହେଉଛନ୍ତି । କଣ ସେମାନେ କେବେ ପଇସା ମାଗିଛନ୍ତି? ରହିବାକୁ ଜାଗା ଖଣ୍ଡେ କିଣିବା ପାଇଁ ପଇସା ଦେବାକୁ ପଡ଼େ । କିନ୍ତୁ ଭଗବାନ ରହିବା ପାଇଁ ଏତେ ବଡ଼ ପୃଥିବୀ ଦେଇଛନ୍ତି, ସେଥିପାଇଁ କଣ ସେ କେବେ ପଇସା ମାଗିଛନ୍ତି? ଯଦି ଏ ସବୁର ମୂଲ୍ୟ ମଗାଯାଏ, ତେବେ ଦେବାକୁ କାହାର ଶକ୍ତି ଅଛି? ଯାହାଙ୍କ ଦ୍ୱାରା ରଚିତ ସୃଷ୍ଟି ମଧ୍ୟ ଏତେ ଉଦାର, ସେହି ସ୍ରଷ୍ଟା କେତେ ଉଦାର ହୋଇ ନ ଥିବେ!

ଗୋଟିଏ କଥା ଶୁଣିଥିଲି । ଥରେ ଜଣେ ସଜ୍ଜନ ଏକାଦଶୀ ବ୍ରତ କରିଥିଲେ । ଦ୍ୱାଦଶୀ ଦିନ କାହାକୁ ଭୋଜନ କରାଇ ସେ ପାରଣ କରିବାକୁ ଇଚ୍ଛା କରୁଥିଲେ, କିନ୍ତୁ ତାଙ୍କୁ କେହି ମିଳିଲେ ନାହିଁ । ବର୍ଷା ହେଉଥାଏ । ଖୋଜି ଖୋଜି ଶେଷରେ ସେ ଜଣେ ବୃଦ୍ଧ ସାଧୁଙ୍କ ସହିତ ଭେଟ ହେଲେ ଏବଂ ଭୋଜନ କରାଇବା ପାଇଁ ତାଙ୍କୁ ଘରକୁ ଡାକିଲେ । ତାଙ୍କୁ ଆସନରେ ବସାଇ ତାଙ୍କ ଆଗରେ ଭୋଜନ ଥାଳି ରଖିଦେବା ମାତ୍ରେ ସାଧୁ ଜଣକ ଖାଇବା ଆରମ୍ଭ କରିଦେଲେ । ସଜ୍ଜନ ଜଣକ କହିଲେ, "ଆଜ୍ଞା, ଆପଣ ଭଗବାନଙ୍କୁ ତ ଅର୍ପଣ କଲେ ନାହିଁ!" ସାଧୁ କହିଲେ, "ଭଗବାନ କ'ଣ? ତୁମେ ଗଣ୍ଡମୂର୍ଖ, କିଛି ବୁଝି ନାହଁ।" ଏହା ଶୁଣିବାମାତ୍ରେ ସଜ୍ଜନ ଜଣକ ଖାଇବା ଥାଳି ଟାଣିନେଲେ ଓ କହିଲେ, "ଯଦି ଭଗବାନ କିଛି ନୁହନ୍ତି, ତେବେ ତୁମେ ଆମର କ'ଣ? ଭଗବାନଙ୍କ ସକାଶେ ତ ଆମେ ତୁମକୁ

ଭୋଜନ କରାଉଛୁ।'' ସେତେବେଳେ ଶୂନ୍ୟବାଣୀ ହେଲା, ''ଆରେ! ମୋର ନିନ୍ଦା କରି କରି ଏହି ସାଧୁ ବୁଢ଼ା ହେଲାଣି, ତଥାପି ଏପର୍ଯ୍ୟନ୍ତ ମୁଁ ଏହାକୁ ଅନ୍ନ ଦେଉଛି ଆଉ ତୁ ମୋର ଭକ୍ତ ବୋଲାଉଛୁ, ଅଥଚ ଥରେ ଖାଇବା ପାଇଁ ଅନ୍ନ ମୁଠାଏ ଦେଇପାରୁ ନାହୁଁ! ଯଦି ମୁଁ ଖାଇବା ପାଇଁ କିଛି ନ ଦିଏ, ଇଏ କେତେ ଦିନ ବଞ୍ଚିବ?'' ଶୂନ୍ୟବାଣୀ ଶୁଣି ସଜ୍ଜନଙ୍କୁ ବହୁତ ଲଜ୍ଜାବୋଧ ହେଲା ଏବଂ ସେ ସାଧୁଙ୍କୁ କ୍ଷମା ମାଗି ପ୍ରେମର ସହିତ ଭୋଜନ କରାଇଲେ।

**ଐସୋ କୋ ଉଦାର ଜଗ ମାହୀଁ।**

**ବିନୁ ସେୱା ଜୋ ଦ୍ରୱୈ ଦୀନ ପର ରାମ ସରିସ କୋଉ ନାହୀଁ॥**

(ବିନୟପତ୍ରିକା ୧୬୨)

ଏପରି ପରମ ଉଦାର ଭଗବାନ ଥାଉଁ ଥାଉଁ ଯଦି ଆମେ ଦୁଃଖ ପାଉଛୁ, ତା'ହେଲେ ଗୁରୁ ଆମକୁ ସୁଖୀ କରିଦେବେ ଓ ଆମର ଉଦ୍ଧାର କରିଦେବେ—ଏପରି ମନୋବୃତ୍ତି ଠକାମି ଛଡ଼ା ଆଉ କିଛି ନୁହେଁ। ନିଜର ଉଦ୍ଧାର ପାଇଁ ଆମ ନିଜକୁ ହିଁ ପ୍ରସ୍ତୁତ ହେବାକୁ ପଡ଼ିବ। ବାସ୍, କେବଳ ଏତିକି ଆବଶ୍ୟକ।

ଭଗବାନ ପରମ ଦୟାଳୁ। ସେ ସମସ୍ତଙ୍କ ଜୀବନନିର୍ବାହର ବ୍ୟବସ୍ଥା କରନ୍ତି, ତେବେ ସେ କଣ କଲ୍ୟାଣର ବ୍ୟବସ୍ଥା କରିବେ ନାହିଁ? ତେଣୁ ଆପଣମାନେ ହୃଦୟର ସହ ଆତ୍ମକଲ୍ୟାଣ ପାଇଁ ଅଭିଳାଷ ବୃଦ୍ଧି କରନ୍ତୁ ଏବଂ ଭଗବାନଙ୍କୁ ପ୍ରାର୍ଥନା କରି କହନ୍ତୁ, ''ହେ ପ୍ରଭୁ! ମୋର କଲ୍ୟାଣ ହେଉ, ଉଦ୍ଧାର ହେଉ। କଲ୍ୟାଣ କଣ ମୁଁ ତାହା ଜାଣେ ନାହିଁ, କିନ୍ତୁ ଏପରି କୃପା କର, ଯେପରି ମୁଁ କେଉଁଠି କାହାରି ଫାନ୍ଦରେ ନ ପଡ଼େ, ସବୁଦିନ ପାଇଁ ସୁଖୀ ହୋଇଯାଏ। ହେ ପ୍ରଭୁ! ମୁଁ କ'ଣ କରିବି?'' ହୃଦୟର ପ୍ରାର୍ଥନାକୁ ଭଗବାନ ଅବଶ୍ୟ ଶୁଣନ୍ତି—

**ସଚ୍ଚେ ହୃଦୟସେ ପ୍ରାର୍ଥନା, ଜବ ଭକ୍ତ ସଚ୍ଚା ଗାୟ ହୈ।**

**ତୋ ଭକ୍ତବତ୍ସଲ କାନ ମେଁ, ୱହ ପହୁଁଚ ଝଟ ହୀ ଜାୟ ହୈ॥**

[ଅର୍ଥ—ଯଦି ଭକ୍ତ ପ୍ରକୃତରେ ହୃଦୟର ସହିତ ପ୍ରାର୍ଥନା କରେ, ତେବେ ଭକ୍ତବତ୍ସଳ ଭଗବାନଙ୍କ କାନରେ ତାହାର ଡାକ ଅବିଳମ୍ବେ ପହଞ୍ଚିଯାଏ ।]

ଆମର କଲ୍ୟାଣ ପାଇଁ ଆମେ ଯେତେ ଚିନ୍ତିତ, ଭଗବାନ ଓ ସନ୍ଥମହାତ୍ମା ତାହାଠାରୁ ଅଧିକ ଚିନ୍ତିତ! ଶିଶୁ ନିଜ ବିଷୟରେ ଯେତେ ଚିନ୍ତା କରେ, ମାଆ ତାହାଠାରୁ ଅଧିକ ଚିନ୍ତା କରେ, କିନ୍ତୁ ଶିଶୁ ଏହା ବୁଝିପାରେ ନାହିଁ ।

**ହେତୁ ରହିତ ଜଗ ଜୁଗ ଉପକାରୀ । ତୁମ୍ହ ତୁମ୍ହାର ସେୱକ ଅସୁରାରୀ ॥**

(ମାନସ, ଉତ୍ତର. ୪୭ । ୩)

ଯେ ହୃଦୟର ସହ ଭଗବଦ୍‌ଅଭିମୁଖୀ ହୁଏ, ତାକୁ ସାହାଯ୍ୟ କରିବା ପାଇଁ ସମସ୍ତ ସନ୍ଥମହାତ୍ମା ଉତ୍କଣ୍ଠିତ ରହନ୍ତି । ସମସ୍ତଙ୍କର କଲ୍ୟାଣ ପାଇଁ ସନ୍ଥଙ୍କ ହୃଦୟରେ ଅପାର ଦୟା ପରିପୂର୍ଣ୍ଣ । ବାଳକକୁ କ୍ଷୁଧାରେ ଆତୁର ଦେଖି କାହା ମନରେ ଖୁଆଇବାର ଭାବନା ନ ଆସିବ?

ଯଦି କେହି ହୃଦୟର ସହ ନିଜର କଲ୍ୟାଣ ଚାହୁଁଥାଏ, ତେବେ ଭଗବାନ ଅବଶ୍ୟ ତା'ର କଲ୍ୟାଣ କରନ୍ତି । ଗୁରୁ ମଧ୍ୟ ଭଗବାନଙ୍କ ଭଳି ଆମର ହିତ କରନ୍ତି ନାହିଁ—

**ଉମା ରାମ ସମ ହିତ ଜଗ ମାହାଁ । ଗୁରୁ ପିତୁ ମାତୁ ବଂଧୁ ପ୍ରଭୁ ନାହାଁ ॥**
**ସୁର ନର ମୁନି ସବ କୈ ଯହ ରୀତୀ । ସ୍ୱାରଥ ଲାଗି କରହିଁ ସବ ପ୍ରୀତୀ ॥**

(ମାନସ, କିଷ୍କିନ୍ଧା. ୧୨ । ୧)



# ଗୁରୁ ବିଷୟକ ପ୍ରଶ୍ନୋତ୍ତର

**ପ୍ରଶ୍ନ**—ଗୁରୁ ବିନା ଉଦ୍ଧାର ହେବ କିପରି? କାରଣ ରାମଚରିତ-ମାନସରେ ଅଛି ଯେ—**'ଗୁରୁ ବିନୁ ଭବ ନିଧି ତରଇ ନ କୋଈ'** (ମାନସ, ଉତ୍ତର. ୯୩।୩)।

**ଉତ୍ତର**—ସେହି ମାନସରେ ଏ କଥା ମଧ୍ୟ ଅଛି ଯେ—

**ଗୁର ସିଷ ବିଧିର ଅଂଧ କା ଲେଖା । ଏକ ନ ସୁନଇ ଏକ ନହିଁ ଦେଖା ॥**
**ହରଇ ସିଷ୍ୟ ଧନ ସୋକ ନ ହରଈ । ସୋ ଗୁର ଘୋର ନରକ ମହୁଁ ପରଈ ॥**

(ମାନସ, ଉତ୍ତର. ୯୯।୩,୪)

[ଅର୍ଥ—ଗୁରୁ ଓ ଶିଷ୍ୟର ସମ୍ପର୍କ ବଧିର ଓ ଅନ୍ଧର ସମ୍ପର୍କ ଭଳି। ଜଣେ (ଶିଷ୍ୟ) ଗୁରୁଙ୍କର ଉପଦେଶକୁ ଶୁଣି ପାରେ ନାହିଁ ଓ ଅନ୍ୟ ଜଣେ (ଗୁରୁ, ଜ୍ଞାନଦୃଷ୍ଟି ନ ଥିବାରୁ) ଦେଖି ପାରେ ନାହିଁ। ଯେଉଁ ଗୁରୁ ଶିଷ୍ୟର ଶୋକ ହରଣ ନ କରି ଧନ ହରଣ କରେ, ସେହି ଗୁରୁ ଘୋର ନରକରେ ପଡ଼େ।]

କୃତ୍ରିମ ଗୁରୁଙ୍କ ଦ୍ୱାରା ଉଦ୍ଧାର ହୁଏ ନାହିଁ। କୃତ୍ରିମ ଗୁରୁ କୌଣସି କାମକୁ ନୁହନ୍ତି। ଆମେ କୌଣସି ସନ୍ଥଙ୍କ ବଚନ ମାନିଲେ ଯାଇ ଆମର ଉଦ୍ଧାର ହେବ ଏବଂ ଯାହାଙ୍କ ବଚନ ମାନିବାରୁ ଆମର ଉଦ୍ଧାର ହେଲା, ସେ ହେଲେ ଆମର ଗୁରୁ। ଶ୍ରୀମଦ୍ଭାଗବତର ଏକାଦଶ ସ୍କନ୍ଧରେ ଦତ୍ତାତ୍ରେୟ ନିଜ ଚବିଶ ଗୁରୁଙ୍କ ବିଷୟରେ ବର୍ଣ୍ଣନା କରିଛନ୍ତି। ତାତ୍ପର୍ଯ୍ୟ ହେଲା, ମନୁଷ୍ୟ କାହାରିଠାରୁ ମଧ୍ୟ ଶିକ୍ଷା ଗ୍ରହଣ କରି ନିଜର ଉଦ୍ଧାର କରି ପାରିବ। ତେଣୁ ଗୁରୁ କରିବା ଆବଶ୍ୟକ ନୁହେଁ, ବରଂ ଶିକ୍ଷା ଗ୍ରହଣ କରିବା ଆବଶ୍ୟକ। ଯାହାଙ୍କ ଶିକ୍ଷାରେ ଓ ଯାହାଙ୍କ ବଚନ ଦ୍ୱାରା ଆମର ଉଦ୍ଧାର ହୁଏ, ଆମେ ତାଙ୍କୁ ଗୁରୁ ନ କଲେ ମଧ୍ୟ ସେ

ଆମର ଗୁରୁ ହୋଇଗଲେ । ଯଦି କଥା ନ ମାନିବା, ତେବେ ଗୁରୁ କରିଲେ ମଧ୍ୟ କଲ୍ୟାଣ (ଉଦ୍ଧାର) ହେବ ନାହିଁ, ଓଲଟା ପାପ ଓ ଅପରାଧ ହେବ । ଆଜିକାଲିର ଗୁରୁ ଏକାବେଳକେ ହଜାର ହଜାର ଲୋକଙ୍କୁ ଦୀକ୍ଷା ଦେଉଛନ୍ତି ଏବଂ ସାମୁହିକ ରୂପରେ ସମସ୍ତଙ୍କୁ ନିଜର ଚେଲା କରୁଛନ୍ତି । ଗୁରୁଙ୍କର ଚେଲାମାନଙ୍କ କଲ୍ୟାଣ ବିଷୟରେ ଚିନ୍ତା ନାହିଁ ଏବଂ ଚେଲାମାନଙ୍କର ମଧ୍ୟ ନିଜ କଲ୍ୟାଣ ପାଇଁ ନିଷ୍ଠା ନାହିଁ । ଗୁରୁ ଚେଲାମାନଙ୍କର କଲ୍ୟାଣ କରି ପାରନ୍ତି ନାହିଁ କି ଚେଲାମାନେ ଅନ୍ୟ କେଉଁଠିକି ଯାଇ ପାରନ୍ତି ନାହିଁ । ଏପରି ଚେଲା କରି ଗୁରୁ ସେହି ଲୋକମାନଙ୍କ କଲ୍ୟାଣପ୍ରାପ୍ତିରେ ବରଂ ପ୍ରତିବନ୍ଧକ ସୃଷ୍ଟି କରନ୍ତି!

**ପ୍ରଶ୍ନ**—ଏ କଥା ପ୍ରଚଳିତ ଅଛି ଯେ ଯେଉଁମାନେ ଗୁରୁ କରି ନ ଥାନ୍ତି, ସେମାନଙ୍କର କଲ୍ୟାଣ ହୁଏ ନାହିଁ । ତେଣୁ ଗୁରୁ କରିବା ତ ଆବଶ୍ୟକ?

**ଉତ୍ତର**—ଯାହାର ଭଲ ଓ ମନ୍ଦ ବାଛିବାର ଜ୍ଞାନ ରହିଛି, ସେ ଗୁରୁବିହୀନ ହେଲା କିପରି? ଭଲ ଓ ମନ୍ଦର ଜ୍ଞାନ (ବିବେକ) ସମସ୍ତଙ୍କ ଠାରେ ଥାଏ । ଭଗବାନଙ୍କ ନାମ ଜପ କରିବା ଉଚିତ, ତାଙ୍କୁ ସ୍ମରଣ କରିବା ଉଚିତ, କାହାକୁ ବି ଦୁଃଖ ନ ଦେବା ଉଚିତ ଇତ୍ୟାଦି କଥା ସମସ୍ତେ ଜାଣନ୍ତି । ଏ ବିଷୟର ଜ୍ଞାନ ଯାହାଙ୍କ ଠାରୁ ମିଳିଲା, ତାଙ୍କୁ ଜାଣ ବା ନ ଜାଣ, ମାନ ବା ନ ମାନ, ସେ ଗୁରୁ ହୋଇଗଲେ ।

ଯିଏ ଗୁରୁ କରିଦେଲା, ଅଥଚ ଗୁରୁଙ୍କ କଥା ଶୁଣୁ ନାହିଁ, ସେ ହିଁ ଗୁରୁବିହୀନ । ତାକୁ ଅପରାଧର ଭାଗୀ ହେବାକୁ ପଡ଼େ । ଯିଏ ଆଦୌ ଗୁରୁ କରି ନାହିଁ, ତାକୁ ଅପରାଧ ଲାଗିବ କିପରି?

ଗୁରୁ କରିଦେଲେ ଯେ କଲ୍ୟାଣ ହୋଇଯିବ, ଏପରି କୌଣସି ବିଧାନ ନାହିଁ । ଗୁରୁ କରିଦେଲେ କଲ୍ୟାଣ ହୁଏ ନାହିଁ, କଲ୍ୟାଣ ହୁଏ ନିଜର ଅଭିଳାଷ ବା ନିଷ୍ଠା ଦ୍ୱାରା ।

ଭଗବାନ ଜଗତର ଗୁରୁ—**'କୃଷ୍ଣଂ ବନ୍ଦେ ଜଗଦ୍‌ଗୁରୁମ୍‌।'** ଆପଣ ଜଗତରୁ ବାହାର ନୁହନ୍ତି, ପୁଣି ଆପଣ ଗୁରୁବିହୀନ ହେଲେ କିପରି? ତେଣୁ ଉଚ୍ଚକୋଟିର ମହାତ୍ମାମାନଙ୍କର ସତ୍ସଙ୍ଗ କରନ୍ତୁ ଏବଂ ସେମାନଙ୍କ କଥା ମାନନ୍ତୁ। ଗୁରୁ-ଶିଷ୍ୟ ସମ୍ବନ୍ଧ ସ୍ଥାପନ କରିବା ଭଲ ନୁହେଁ। ବାସ୍ତବରେ ଯେଉଁମାନେ ଜୀବନ୍ମୁକ୍ତ, ତତ୍ତ୍ୱଜ୍ଞ ଓ ଭଗବତ୍‌ପ୍ରେମୀ ମହାତ୍ମା, ସେମାନେ କଲ୍ୟାଣର ମାର୍ଗ ତ ଦର୍ଶାଇ ଦିଅନ୍ତି, କିନ୍ତୁ ଚେଲା କରନ୍ତି ନାହିଁ। ତାଙ୍କୁ ଗୁରୁ ନ କରି ତାଙ୍କର ଯେତିକି କଥା ମାନିବେ, ସେତିକି ଉନ୍ନତି ହେବ ଏବଂ କୌଣସି କଥା ନ ମାନିଲେ ପାପ ଲାଗିବ ନାହିଁ। କିନ୍ତୁ ଗୁରୁ କରିବା ପରେ କଥା ନ ମାନିଲେ କେବଳ ପାପ ନୁହେଁ, ଅପରାଧ ମଧ୍ୟ ହେବ।

**ପ୍ରଶ୍ନ—**କଥିତ ଅଛି ଯେ ଗୁରୁଙ୍କ ଠାରୁ ମନ୍ତ୍ର ନେଲେ କୁଆଡ଼େ ସେହି ମନ୍ତ୍ର ମାଧ୍ୟମରେ ଶକ୍ତି ଆସେ?

**ଉତ୍ତର—**ମନ୍ତ୍ର ଦେଉଥିବା ବ୍ୟକ୍ତିଠାରେ ଶକ୍ତି ଥିଲେ ସିନା ତା'ଦ୍ୱାରା ପ୍ରଦତ୍ତ ମନ୍ତ୍ର ମାଧ୍ୟମରେ ଶକ୍ତି ଆସିବ। ଯାହାଠାରେ ଶକ୍ତି ବୋଲି କିଛି ନାହିଁ, ସେ ଦେଉଥିବା ମନ୍ତ୍ରରେ ଶକ୍ତି ଆସିବ କିପରି? ତେଣୁ କଥାରେ ଅଛି—

**ବଚନ ଆଗଲେ ସନ୍ତ କା, ହରିୟା ହସ୍ତୀ ଦନ୍ତ।**
**ତାଖ ନ ଟୂଟେ ଭରମ କା, ସୈଁଧେ ହୀ ବିନୁ ସନ୍ତ॥**

ଅର୍ଥାତ୍ ଅନୁଭବୀ ସନ୍ଥଙ୍କ ବଚନ ହାତୀଦାନ୍ତ ସଦୃଶ, ଯାହା କି ଅଜ୍ଞାନରୂପୀ ଦ୍ୱାରକୁ ଭାଙ୍ଗି ଦିଏ। ହାତୀ ନିଜର ଦାନ୍ତ ସାହାଯ୍ୟରେ ଦୁର୍ଗର ଦ୍ୱାରକୁ ତାଡ଼ି ଦିଏ। କିନ୍ତୁ ହାତୀ ବିନା କେହି କେବଳ ହାତୀଦାନ୍ତରେ ଦୁର୍ଗର ଦ୍ୱାର ତାଡ଼ିବାକୁ ଚାହିଁଲେ ପାରିବ ନାହିଁ। କାରଣ ଶକ୍ତି ବାସ୍ତବରେ ହାତୀଠାରେ ଥାଏ, କେବଳ ଦାନ୍ତରେ ନୁହେଁ। ସେହି ସନ୍ଥଙ୍କ ଅନୁଭବରେ ହିଁ ଶକ୍ତି ରହିଥାଏ, କେବଳ ବଚନରେ ନୁହେଁ।

ଆଜିକାଲି ଗୁରୁ ହେବା, ନିଜ ସମ୍ପ୍ରଦାୟକୁ ନେଇ ଗୋଷ୍ଠୀ ଗଢ଼ିବା ଏକ ସଉକ ହୋଇଗଲାଣି; କିନ୍ତୁ ଜୀବର କିପରି କଲ୍ୟାଣ ହେବ, ସେ ଦିଗକୁ ଦୃଷ୍ଟି କମ୍ । ନିଜ ସମ୍ପ୍ରଦାୟ୍ ଅନୁସାରେ ମନ୍ତ୍ର ଦେଲେ ଗୋଷ୍ଠୀ ଗଠନ ତ ହୋଇଯାଏ, କିନ୍ତୁ ତତ୍ତ୍ୱପ୍ରାପ୍ତିରେ ଅସୁବିଧା ହୁଏ । ନିଜର ଶ୍ରଦ୍ଧା, ବିଶ୍ୱାସ ଓ ରୁଚି ଅନୁସାରେ ସାଧନା କଲେ ଯାଇ ତତ୍ତ୍ୱପ୍ରାପ୍ତି ହୁଏ । ସବୁ ଉପାସନା ଠିକ୍ ହୋଇଥିଲେ ମଧ୍ୟ ଯେଉଁ ଉପାସନା ସ୍ୱାଭାବିକଭାବରେ ହୁଏ, ତାହା ପ୍ରକୃତ ଏବଂ ଯାହା କରାଯାଏ, ତାହା କୃତ୍ରିମ । ଆଜିକାଲି ସାଧକମାନଙ୍କ ମନରେ ଅନେକ ଦ୍ୱନ୍ଦ୍ୱ ସୃଷ୍ଟି ହେଉଛି । ଗୁରୁ କୃଷ୍ଣମନ୍ତ୍ର ଦେଲେ, ଅଥଚ ରାମମନ୍ତ୍ରରେ ଆମ ମନ ଲାଗୁଛି, ଏପରି ସ୍ଥିତିରେ କ'ଣ କରାଯିବ? ଏ ବିଷୟରେ ମୋର ପ୍ରାର୍ଥନା ଯେ, ଯଦି ଆପଣଙ୍କର ରୁଚି, ଶ୍ରଦ୍ଧା ଓ ବିଶ୍ୱାସ ରାମମନ୍ତ୍ରରେ ହେଉଛି, ତେବେ ରାମମନ୍ତ୍ର ହିଁ ଜପ କରିବା ଉଚିତ । ଯେହେତୁ ଗୁରୁ ମନ୍ତ୍ର ଦେଇଛନ୍ତି, ତେଣୁ ସେହି ମନ୍ତ୍ରକୁ ଏକ ମାଳା ଜପ କରି ପାରନ୍ତି, କିନ୍ତୁ ଅନ୍ୟ ସମୟରେ ଯେଉଁ ମନ୍ତ୍ରରେ ଆପଣଙ୍କର ରୁଚି ହେଉଛି, ତାହାକୁ ଜପ କରିବା ଉଚିତ । ଯେଉଁ ଉପାସନାରେ ସ୍ୱାଭାବିକଭାବେ ରୁଚି ହୁଏ, ତାହା ହିଁ ସିଦ୍ଧ ହୁଏ । ଉପରେ ଲଦି ଦିଆଯାଇଥିବା ଉପାସନା ଶୀଘ୍ର ସିଦ୍ଧ ହୁଏ ନାହିଁ । ଯେଉଁ ମନ୍ତ୍ରରେ ଆପଣଙ୍କର ଅଧିକ ଶ୍ରଦ୍ଧା ହେବ, ସେହି ମନ୍ତ୍ରରୁ ସ୍ୱାଭାବିକଭାବରେ ଶକ୍ତି ମିଳିବ । କାରଣ ମୂଳତଃ ସବୁ ଶକ୍ତି ପରମାତ୍ମାଙ୍କର, କୌଣସି ବ୍ୟକ୍ତିର ନୁହେଁ । ଅଗସ୍ତି, ବିଶ୍ୱାମିତ୍ର ଆଦି ବଡ଼ ବଡ଼ ମୁନିଋଷିଙ୍କ ଠାରେ ଯେଉଁ ଶକ୍ତି ଥିଲା, ତାହା ସେମାନଙ୍କୁ ଗୁରୁଙ୍କ ଠାରୁ ପ୍ରାପ୍ତ ହୋଇ ନ ଥିଲା, ବରଂ ସେମାନଙ୍କ ତପସ୍ୟାଦି ଯୋଗୁଁ ଭଗବାନଙ୍କ ଠାରୁ ପ୍ରାପ୍ତ ହୋଇଥିଲା । ଭଗବାନଙ୍କ ଶକ୍ତି ସର୍ବତ୍ର ବିଦ୍ୟମାନ ଓ ନିତ୍ୟ ବିଦ୍ୟମାନ; ଏବଂ ତାହା ସମସ୍ତଙ୍କ ପାଇଁ ସମାନ । ସେହି ଶକ୍ତିର କାହାରି ପ୍ରତି ପକ୍ଷପାତିତା ନାହିଁ । ସେହି ଶକ୍ତିକୁ ଯିଏ ଗ୍ରହିଁବ, ସେ ପାଇ ପାରିବ ।

**ପ୍ରଶ୍ନ**—ଗୁରୁ ବିନା କୁଣ୍ଡଳିନୀ ଜାଗ୍ରତ ହେବ କିପରି?

**ଉତ୍ତର**—କୁଣ୍ଡଳିନୀ ଜାଗ୍ରତ କରିଦେଲେ ପରମାତ୍ମପ୍ରାପ୍ତି ହୁଏ ନାହିଁ, କଲ୍ୟାଣ ହୁଏ ନାହିଁ। କୌଣସି ଶୋଇଥିବା ସାପକୁ ଜଗାଇ ଦେଲେ କଣ ମୁକ୍ତି ହୋଇଯିବ? ସନ୍ଥ ଶ୍ରୀଶରଣାନନ୍ଦଙ୍କୁ କେହି ଜଣେ ପଗ୍ଚରିଲେ ଯେ କୁଣ୍ଡଳିନୀ ବିଷୟରେ ଆପଣଙ୍କର ଅଭିଜ୍ଞତା କ'ଣ? ସେ କହିଲେ, "ମୁଁ ଏତିକି ଜାଣେ ଯେ କୁଣ୍ଡଳିନୀ ସହିତ ମୋର ସମ୍ବନ୍ଧ ନାହିଁ। କୁଣ୍ଡଳିନୀ ଶୋଇଥାଉ ବା ଜାଗ୍ରତ ହୋଇଥାଉ, ସେଥିରେ ମୋର କି ପ୍ରୟୋଜନ?" କୁଣ୍ଡଳିନୀ ଶରୀରରେ ଜାଗ୍ରତ ହୁଏ, ସ୍ୱରୂପରେ ନୁହେଁ। ତେଣୁ କୁଣ୍ଡଳିନୀ ଜାଗ୍ରତ ହୋଇଗଲେ ବି ସାଧକ ଶରୀରରୁ ଅତୀତ ହେବ କିପରି? ଶରୀରରୁ ଅତୀତ ନ ହେଲେ କଲ୍ୟାଣ ହେବ କିପରି? କଲ୍ୟାଣ ତ ଶରୀରରୁ ସମ୍ପୂର୍ଣ୍ଣ ସମ୍ବନ୍ଧ ଛିନ୍ନ ହେଲେ ଯାଇ ହୁଏ।

**ପ୍ରଶ୍ନ**—କେତେକ ଲୋକଙ୍କୁ ଗୁରୁଙ୍କ ଦ୍ୱାରା କୁଣ୍ଡଳିନୀ ଜାଗରଣ ଆଦି ଅନେକ ଅଲୌକିକ ଅନୁଭୂତି ହେଉଛି, ସେସବୁ କ'ଣ?

**ଉତ୍ତର**—ତାହା ଚମତ୍କାରିତାମାତ୍ର, କିନ୍ତୁ ତାହା ଦ୍ୱାରା କଲ୍ୟାଣ ହୁଏ ନାହିଁ। କଲ୍ୟାଣ ତ ଜଡ଼ତା (ଶରୀର ଓ ସଂସାର)ରୁ ଊର୍ଦ୍ଧ୍ୱକୁ ଉଠିଲେ ଯାଇ ହୁଏ।

**ପ୍ରଶ୍ନ**—ମୁଁ ଗୁରୁଙ୍କ ଠାରୁ କଣ୍ଠିମାଳା ତ ଗ୍ରହଣ କଲି, କିନ୍ତୁ ଏବେ ଆଉ ତାଙ୍କ ପ୍ରତି ଶ୍ରଦ୍ଧା ରହୁ ନାହିଁ, ତେବେ କଣ୍ଠିମାଳା କଣ ଫେରାଇ ଦେବି?

**ଉତ୍ତର**—କଣ୍ଠିମାଳା ଫେରାଇ ଦେବା ପାଇଁ ମୁଁ କଦାପି କହୁ ନାହିଁ। ମୋର ମତ ହେଲା, ସବୁଦିନ ଆପଣ ଗୁରୁମନ୍ତ୍ରର ଗୋଟିଏ ଲେଖାଏଁ ମାଳା ଜପ କରନ୍ତୁ ଏବଂ ଅନ୍ୟ ସମୟରେ ଆପଣଙ୍କର ଯେଉଁ ମନ୍ତ୍ରରେ ଶ୍ରଦ୍ଧା ହେଉଛି, ସେହି ମନ୍ତ୍ର ଜପ କରନ୍ତୁ ଏବଂ ସ୍ୱାଧ୍ୟାୟ ଓ ସତ୍ସଙ୍ଗ କରନ୍ତୁ।

**ପ୍ରଶ୍ନ**—ଆଗରୁ ଗୁରୁ କରି ନେଇଛି, କିନ୍ତୁ ଏବେ ଆଉ ତାଙ୍କ ପ୍ରତି ଶ୍ରଦ୍ଧା ରହୁ ନାହିଁ। ଏପରି କ୍ଷେତ୍ରରେ ତାଙ୍କୁ ତ୍ୟାଗ କରିଦେଲେ ପାପ ଲାଗିବ ନାହିଁ ତ?

**ଉତ୍ତର**—ଯଦି ଆପଣଙ୍କ ମନରେ ଗୁରୁଙ୍କୁ ତ୍ୟାଗ କରିଦେବା ପାଇଁ ଇଚ୍ଛା ହୋଇଗଲା, ତାଙ୍କ ପ୍ରତି ଶ୍ରଦ୍ଧା ରହିଲା ନାହିଁ, ତେବେ ଗୁରୁତ୍ୟାଗ ତ ଆପେ ଆପେ ହୋଇଗଲା। ତେଣୁ ସେହି ଗୁରୁଙ୍କର ନିନ୍ଦା କରନ୍ତୁ ନାହିଁ ଏବଂ ତାଙ୍କ ସହିତ ସମ୍ବନ୍ଧ ମଧ୍ୟ ରଖନ୍ତୁ ନାହିଁ।

ଯାହାର ଧନ ପ୍ରତି ଲୋଭ ରହିଛି, ସ୍ତ୍ରୀ ପ୍ରତି ମୋହ ରହିଛି, କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟର ଜ୍ଞାନ ନାହିଁ, ଯିଏ ଅସତ୍‌ପନ୍ଥା ଅବଲମ୍ବନ କରୁଛି, ଏପରି ଗୁରୁକୁ ତ୍ୟାଗ କରିଦେଲେ କୌଣସି ଦୋଷ ବା ପାପ ଲାଗେ ନାହିଁ। ଶାସ୍ତ୍ରରେ ଏପରି ଗୁରୁକୁ ତ୍ୟାଗ କରିଦେବା ପାଇଁ କୁହାଯାଇଛି—

**ଗୁରୋରପ୍ୟବଲିପ୍ତସ୍ୟ କାର୍ଯ୍ୟାକାର୍ଯ୍ୟମଜାନତଃ।**
**ଉତ୍ପଥପ୍ରତିପନ୍ନସ୍ୟ ପରିତ୍ୟାଗୋ ବିଧୀୟତେ ॥***

(ମହାଭାରତ, ଉଦ୍‌ଯୋଗ ୧୭୮।୪୮)

"ଗୁରୁ ଯଦି ଗର୍ବରେ ପ୍ରମତ୍ତ ହୋଇ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟର ଜ୍ଞାନ ହରାଇ ବସନ୍ତି ଏବଂ କୁମାର୍ଗଗାମୀ ହୁଅନ୍ତି, ତାଙ୍କୁ ପରିତ୍ୟାଗ କରିଦେବାର ବିଧାନ ରହିଛି।"

**ଜ୍ଞାନହୀନୋ ଗୁରୁସ୍ତ୍ୟାଜ୍ୟୋ ମିଥ୍ୟାବାଦୀ ବିକଳ୍ପକଃ।**
**ସ୍ୱବିଶ୍ରାନ୍ତିଂ ନ ଜାନାତି ପରଶାନ୍ତିଂ କରୋତି କିମ୍॥**

(ସିଦ୍ଧସିଦ୍ଧାନ୍ତସଂଗ୍ରହ, ଗୁରୁଗୀତା)

"ଜ୍ଞାନବିହୀନ, ମିଥ୍ୟାବାଦୀ ଓ ଭ୍ରମ ଜାତ କରାଉଥିବା ଗୁରୁକୁ

---

* ଏହି ଶ୍ଲୋକଟି ସାମାନ୍ୟ ପାଠାନ୍ତର ସହିତ ବାଲ୍ମୀକିରାମାୟଣ, ପଦ୍ମପୁରାଣ, ସ୍କନ୍ଦପୁରାଣ ପ୍ରଭୃତିରେ ମଧ୍ୟ ଦେଖିବାକୁ ମିଳେ।

ପରିତ୍ୟାଗ କରିଦେବା ଉଚିତ; କାରଣ ଯିଏ ନିଜେ ଶାନ୍ତି ଲାଭ କରି ନାହିଁ, ସେ ଅନ୍ୟମାନଙ୍କୁ ଶାନ୍ତି ପ୍ରଦାନ କରିବ କିପରି?''

**ପତିତା ଗୁରବସ୍ତ୍ୟାଜ୍ୟା ମାତା ଚ ନ କଥଞ୍ଚନ ।**
**ଗର୍ଭଧାରଣପୋଷାଭ୍ୟାଂ ତେନ ମାତା ଗରୀୟସୀ ॥**

(ସ୍କନ୍ଦପୁରାଣ, ମା. କୌ. ୬ । ୭; ମତ୍ସ୍ୟପୁରାଣ ୨୨୭ । ୧୫୦)

''ପତିତ ଗୁରୁ ତ୍ୟାଜ୍ୟ ଅଟେ, କିନ୍ତୁ ମାଆ କଦାପି ତ୍ୟାଜ୍ୟ ନୁହେଁ । ଗର୍ଭାବସ୍ଥାରେ ଧାରଣ ଓ ପୋଷଣ କରିଥିବାରୁ ମାଆର ଗୌରବ ଗୁରୁଜନମାନଙ୍କ ଠାରୁ ମଧ୍ୟ ଅଧିକ ।''

**ପ୍ରଶ୍ନ**—ନାରୀମାନେ କଣ କାହାକୁ ଗୁରୁ କରି ପାରିବେ?

**ଉତ୍ତର**—ନାରୀ କାହାକୁ ଗୁରୁ କରିବା ଉଚିତ ନୁହେଁ । ଯଦି କେହି କରିଥାଏ, ତେବେ ଛାଡ଼ିଦେବା ଉଚିତ । ସ୍ତ୍ରୀ ପାଇଁ ପତି ହିଁ ଏକମାତ୍ର ଗୁରୁ । ଶାସ୍ତ୍ରରେ ଅଛି—

**ଗୁରୁରଗ୍ନିର୍ଦ୍ୱିଜାତୀନାଂ ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ ।**
**ପତିରେବ ଗୁରୁଃ ସ୍ତ୍ରୀଣାଂ ସର୍ବସ୍ୟାଽଭ୍ୟାଗତୋ ଗୁରୁଃ ॥**

(ପଦ୍ମପୁରାଣ, ସ୍ୱର୍ଗ. ୫୧ । ୫୧; ବ୍ରହ୍ମପୁରାଣ ୮୦ । ୪୭)

''ଅଗ୍ନି ଦ୍ୱିଜାତିମାନଙ୍କର ଗୁରୁ, ବ୍ରାହ୍ମଣ ଚ୍ୱରିବର୍ଣ୍ଣର ଗୁରୁ, କେବଳ ପତି ହିଁ ପତ୍ନୀର ଗୁରୁ ଏବଂ ଅତିଥି ସମସ୍ତଙ୍କର ଗୁରୁ ।''

**ବୈବାହିକୋ ବିଧିଃ ସ୍ତ୍ରୀଣାଂ ସଂସ୍କାରୋ ବୈଦିକଃ ସ୍ମୃତଃ ।**
**ପତିସେବା ଗୁରୌ ବାସୋ ଗୃହାର୍ଥୋଽଗ୍ନିପରିକ୍ରିୟା ॥**

(ମନୁସ୍ମୃତି ୨ । ୬୭)

''ନାରୀମାନଙ୍କ ପାଇଁ ବୈବାହିକ ବିଧିର ପାଳନ ହିଁ ବୈଦିକ ସଂସ୍କାର (ଯଜ୍ଞୋପବୀତଧାରଣ), ପତିସେବା ହିଁ ଗୁରୁକୁଳବାସ ଏବଂ ଗୃହକାର୍ଯ୍ୟ ହିଁ ଅଗ୍ନିହୋତ୍ର ବୋଲି କଥିତ ଅଛି ।''

କୌଣସି ନାରୀ ନିଜ ପତିଙ୍କ ବ୍ୟତୀତ ଅନ୍ୟ କୌଣସି ପୁରୁଷ

ସଙ୍ଗେ କୌଣସି ପ୍ରକାରର ସମ୍ବନ୍ଧ କରିବା ଉଚିତ ନୁହେଁ । ନାରୀମାନଙ୍କୁ ମୋର ପ୍ରାର୍ଥନା ଯେ ସେମାନେ କେବେ କୌଣସି ସାଧୁର ଫାନ୍ଦରେ ନ ପଡ଼ନ୍ତୁ । ଆଜିକାଲି ବହୁଳ ଭାବରେ ଠକାମି, ଦମ୍ଭ ଓ ଭଣ୍ଡାମି ବ୍ୟାପିଗଲାଣି । ମୋ ପାଖକୁ ଏମିତି କେତେ ପତ୍ର ଆସୁଛି ଏବଂ ଭୁକ୍ତଭୋଗୀ ମହିଳାମାନେ ମଧ୍ୟ ନିଜ ଅଙ୍ଗେ ଲିଭାଇଥିବା କଥା ମୋ ଆଗରେ କହୁଛନ୍ତି । ଏ ସବୁରୁ ଜଣାପଡୁଛି ଯେ ବର୍ତ୍ତମାନ ସମୟରେ କୌଣସି ନାରୀ ଗୁରୁ କରିବା ଅର୍ଥାତ୍ କୌଣସି ପରପୁରୁଷ ସହିତ ସମ୍ବନ୍ଧ କରିବା ଅନର୍ଥର ମୂଳ ।

ସାଧୁମାନେ ମଧ୍ୟ କୌଣସି ନାରୀକୁ ଚେଲୀ କରିବା ଉଚିତ ନୁହେଁ । ଦୀକ୍ଷା ଦେବାବେଳେ ଗୁରୁଙ୍କୁ ଶିଷ୍ୟର ହୃଦୟ ଆଦିକୁ ସ୍ପର୍ଶ କରିବାକୁ ପଡୁଥିବା ସ୍ଥଳେ ସନ୍ନ୍ୟାସୀ ପାଇଁ ନାରୀର ସ୍ପର୍ଶ କଠୋରଭାବେ ନିଷିଦ୍ଧ କରାଯାଇଛି । ଭାଗବତରେ ବର୍ଣ୍ଣିତ ଅଛି ଯେ, ହାଡ଼ମାଂସର ଶରୀରଧାରୀ ସ୍ତ୍ରୀ କଥା କିଏ ପଚ୍ଛରେ, ଦାରୁ ନିର୍ମିତ ସ୍ତ୍ରୀକୁ ମଧ୍ୟ ସ୍ପର୍ଶ ନ କରିବା ଉଚିତ । ହାତରେ ସ୍ପର୍ଶ କରିବା ତ ଦୂରର କଥା, ଗୋଡ଼ରେ ମଧ୍ୟ ସ୍ପର୍ଶ ନ କରିବା ଉଚିତ ।

**ପଦାପି ଯୁବତୀଂ ଭିକ୍ଷୁର୍ନ ସ୍ପୃଶେଦ୍ ଦାରବୀମପି ।**

(ଶ୍ରୀମଭା. ୧୧ । ୮ । ୧୩)

ଶାସ୍ତ୍ରରେ ଏ କଥା ମଧ୍ୟ କୁହାଯାଇଛି ଯେ—

**ମାତ୍ରା ସ୍ୱସ୍ରା ଦୁହିତ୍ରା ବା ନ ବିବିକ୍ତାସନୋ ଭବେତ୍ ।**
**ବଳବାନିନ୍ଦ୍ରିୟଗ୍ରାମୋ ବିଦ୍ୱାଂସମପି କର୍ଷତି ॥**

(ମନୁ. ୨ । ୨୧୫)

"ମନୁଷ୍ୟ ନିଜର ମାଆ, ଭଉଣୀ ଅଥବା ଝିଅ ସହିତ ମଧ୍ୟ କଦାପି ଏକାନ୍ତରେ ନ ରହିବା ଉଚିତ, କାରଣ ଇନ୍ଦ୍ରିୟଗଣ ବଡ଼ ବଳବାନ୍ । ଏମାନେ ବିଦ୍ୱାନ୍ ମନୁଷ୍ୟକୁ ମଧ୍ୟ ନିଜ ଆଡ଼କୁ ଆକର୍ଷିତ କରିନିଅନ୍ତି ।"

**ସଙ୍ଗଂ ନ କୁର୍ଯ୍ୟାତ୍ ପ୍ରମଦାସୁ ଜାତୁ**
**ଯୋଗସ୍ୟ ପାରଂ ପରମାରୁରୁକ୍ଷୁଃ ।**
**ମତ୍ସେବୟା ପ୍ରତିଲବ୍ଧାତ୍ମଲାଭୋ**
**ବଦନ୍ତି ଯା ନିରୟଦ୍ୱାରମସ୍ୟ ॥**

(ଶ୍ରୀମଭା. ୩ । ୩୧ । ୩୯)

"ଯେଉଁ ପୁରୁଷ ଯୋଗର ପରମ ପଦରେ ଆରୂଢ଼ ହେବାକୁ ଇଚ୍ଛୁକ ଅଥବା ମୋର ସେବା ପ୍ରଭାବରୁ ଯାହାର ଆତ୍ମା ଓ ଅନାତ୍ମା ସମ୍ବନ୍ଧୀୟ ବିବେକ ହୋଇଯାଇଛି, ସେ କଦାପି ସ୍ତ୍ରୀମାନଙ୍କର ସଙ୍ଗ ନ କରୁ; କାରଣ ଏପରି ପୁରୁଷ ପାଇଁ ସ୍ତ୍ରୀମାନେ ନରକର ଉନ୍ମୁକ୍ତ ଦ୍ୱାର ବୋଲି କୁହାଯାଇଛି ।"

**ବିଶ୍ୱାମିତ୍ରପରାଶରପ୍ରଭୃତୟୋ ବାତାମ୍ବୁପର୍ଣ୍ଣାଶନା-**
**ସ୍ତେଽପି ସ୍ତ୍ରୀମୁଖପଙ୍କଜଂ ସୁଲଳିତଂ ଦୃଷ୍ଟ୍ୱୈବ ମୋହଂ ଗତାଃ ।**
**ଶାଲ୍ୟନ୍ନଂ ସଘୃତଂ ପୟୋଦଧିଯୁତଂ ଭୁଞ୍ଜନ୍ତି ଯେ ମାନବା-**
**ସ୍ତେଷାମିନ୍ଦ୍ରିୟନିଗ୍ରହୋ ଯଦି ଭବେଦ୍ବିନ୍ଧ୍ୟସ୍ତରେତ୍ସାଗରେ ॥**

(ଭର୍ତ୍ତୃହରିଶତକ)

"ବାୟୁ ଭକ୍ଷଣ କରି, ଜଳ ପାନ କରି ଏବଂ ଶୁଖିଲା ପତ୍ର ଖାଇ ଜୀବନ ବିତାଉଥିବା ବିଶ୍ୱାମିତ୍ର, ପରାଶର ପ୍ରଭୃତି ଋଷିମାନେ ମଧ୍ୟ ନାରୀମାନଙ୍କର ସୁନ୍ଦର ମୁଖକୁ ଦେଖି ମୋହଗ୍ରସ୍ତ ହୋଇଗଲେ, ପୁଣି ଯେଉଁମାନେ ଘୃତ, ଦୁଗ୍ଧ ଓ ଦଧି ସଙ୍ଗରେ ଶାଳିଧାନ୍ୟ ସେବନ କରନ୍ତି, ସେମାନେ ଯଦି ନିଜ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରିଦେବେ, ତେବେ ତ ବିନ୍ଧ୍ୟାଚଳ ପର୍ବତ ସମୁଦ୍ରରେ ଭାସିଲା ବୋଲି ଜାଣ ।"

ଏପରି ସ୍ଥିତିରେ ଯେଉଁମାନେ ଯୁବତୀ ନାରୀମାନଙ୍କୁ ନିଜର ଚେଲୀ କରୁଛନ୍ତି, ନିଜ ଆଶ୍ରମରେ ରଖୁଛନ୍ତି, ସେମାନଙ୍କର ସ୍ୱପ୍ନରେ ମଧ୍ୟ ଯେ କଲ୍ୟାଣ ହୋଇପିବ, ତାହା ମୋ ମନକୁ ପାଉନି! ପୁଣି

ସେମାନଙ୍କ ଦ୍ୱାରା ଆପଣଙ୍କର ମଙ୍ଗଳ ହେବ କିପରି? ଏହା ପ୍ରତାରଣା ଛଡ଼ା ଆଉ କିଛି ନୁହେଁ!

**ପ୍ରଶ୍ନ**—ଲୋକେ କୁଆଡ଼େ କହନ୍ତି ଯେ ଜୀବନ୍ମୁକ୍ତ ମହାତ୍ମା ଭୋଗ ଉପଭୋଗ କଲେ ମଧ୍ୟ ତାଙ୍କୁ ଦୋଷ ଲାଗେ ନାହିଁ। ଏହା କଣ ଠିକ୍?

**ଉତ୍ତର**—ଏପରି ହେବା ଆଦୌ ସମ୍ଭବ ନୁହେଁ। ଜୀବନ୍ମୁକ୍ତ ହେବା ଓ ଭୋଗ ଉପଭୋଗ କରିବା—ଉଭୟର ଏକତ୍ର ସ୍ଥିତି ସର୍ବଥା ଅସମ୍ଭବ। ଭୋଗ ତ ସାଧନାବସ୍ଥାରେ ଦୂର ହୋଇଯାଏ, ପୁଣି ସିଦ୍ଧ ପୁରୁଷଙ୍କୁ ଭୋଗ ଭୋଗିବାର ଆବଶ୍ୟକତା ପଡ଼ିବ ବା କାହିଁକି? ଏପରି କଥା କେବଳ ଦମ୍ଭୀ ଓ ପାଷଣ୍ଡମାନେ ହିଁ ନିଜ ନିଜର ତୁଚ୍ଛ ସ୍ୱାର୍ଥ ସିଦ୍ଧ କରିବା ପାଇଁ ପ୍ରଚାର କରନ୍ତି। ଏଥିପାଇଁ ରାମଚରିତମାନସରେ ଅଛି—

**ମିଥ୍ୟାରଂଭ ଦଂଭ ରତ ଜୋଈ । ତା କହୁଁ ସଂତ କହଇ ସବ କୋଈ ॥**
**ନିରାଚ୍ଚର ଜୋ ଶ୍ରୁତି ପଥ ତ୍ୟାଗୀ । କଲିଜୁଗ ସୋଇ ଗ୍ୟାନୀ ସୋ ବିରାଗୀ ॥**

(ମାନସ, ଉତ୍ତର. ୯୮ । ୨, ୪)

[ଅର୍ଥ—ଯିଏ ମିଥ୍ୟା ଆଡ଼ମ୍ବର ଦେଖାଇ ହୁଏ ଏବଂ ଯିଏ ଦାମ୍ଭିକ, କଳିଯୁଗରେ ତାକୁ ହିଁ ସମସ୍ତେ ସନ୍ଥ କହନ୍ତି। ଯିଏ ଆଚ୍ଚରବିହୀନ ଓ ବେଦମାର୍ଗ ପରିତ୍ୟାଗୀ, କଳିଯୁଗରେ ସେ ହିଁ ଜ୍ଞାନୀ ଓ ସେ ହିଁ ବୈରାଗ୍ୟବାନ୍ ବୋଲାଏ।]

**ପର ତ୍ରିୟ ଲଂପଟ କପଟ ସୟାନେ । ମୋହ ଦ୍ରୋହ ମମତା ଲପଟାନେ ॥**
**ତେଇ ଅଭେଦବାଦୀ ଗ୍ୟାନୀ ନର । ଦେଖା ମୈଁ ଚରିତ୍ର କଲିଜୁଗ କର ॥**

(ମାନସ, ଉତ୍ତର. ୧୦୦। ୧)

[ଅର୍ଥ—ଯେଉଁମାନେ ପରସ୍ତ୍ରୀ ପ୍ରତି ଆସକ୍ତ, କପଟ କରିବାରେ ଚତୁର ଏବଂ ମୋହ, ଦ୍ରୋହ ଓ ମମତାରେ ଆବଦ୍ଧ, ସେଇମାନେ ହିଁ ଅଭେଦବାଦୀ। ମୁଁ ସେହି କଳିଯୁଗର ଏହି ଚରିତ୍ର ଦେଖିଲି।]

**ବୁଦ୍ଧାଦ୍ୱୈତସତତ୍ତ୍ୱସ୍ୟ ଯଥେଷ୍ଟାଚରଣଂ ଯଦି ।**
**ଶୁନାଂ ତତ୍ତ୍ୱଦୃଶାଂ ଚୈବ କୋ ଭେଦୋଽଶୁଚି ଭକ୍ଷଣେ ॥**

"ଯଦି ଅଦ୍ୱୈତ ତତ୍ତ୍ୱର ଜ୍ଞାନ ଲାଭ ହୋଇଯିବା ପରେ ମଧ୍ୟ ମନଇଚ୍ଛା ଆଚରଣ ହୁଏ, ତେବେ ଅଶୁଦ୍ଧ ଦ୍ରବ୍ୟ (ମଦ, ମାଂସ ଆଦି) ଭକ୍ଷଣ କରିବା ନେଇ ଯଥେଚ୍ଛାଚାରୀ ତତ୍ତ୍ୱଜ୍ଞ ଓ କୁକୁର ମଧ୍ୟରେ କି ପ୍ରଭେଦ ରହିଲା?"

**ଯସ୍ତୁ ପ୍ରବ୍ରଜିତୋ ଭୂତ୍ୱା ପୁନଃ ସେବତେ ମୈଥୁନମ୍ ।**
**ଷଷ୍ଟିବର୍ଷସହସ୍ରାଣି ବିଷ୍ଠାୟାଂ ଜାୟତେ କୃମିଃ ॥**

(ସ୍କନ୍ଦପୁରାଣ, କାଶୀ. ପୂ. ୪୦ । ୧୦୭)

"ଯିଏ ସନ୍ନ୍ୟାସ ଗ୍ରହଣ କରିବା ପରେ ପୁନଶ୍ଚ ସ୍ତ୍ରୀସଙ୍ଗ କରେ, ସେ ଷାଠିଏ ହଜାର ବର୍ଷ ପର୍ଯ୍ୟନ୍ତ ବିଷ୍ଠାର କୃମି ହୋଇ ରହେ ।"

କାମନା ହିଁ ଭୋଗର କାରଣ ଏବଂ କାମନା ସମ୍ପୂର୍ଣ୍ଣ ବର୍ଜିତ ହେଲେ ଯାଇ ଜୀବନ୍ମୁକ୍ତି ହୁଏ । ସାଧକର ମଧ୍ୟ ଆରମ୍ଭରୁ ହିଁ ଭୋଗର କାମନା ନଷ୍ଟ ହୋଇ ଯାଇଥାଏ । ଯଦି କୌଣସି ଗ୍ରନ୍ଥରେ ଏପରି ଲେଖାହୋଇଥାଏ ଯେ ଜୀବନ୍ମୁକ୍ତ ପୁରୁଷ ଭୋଗ ଉପଭୋଗ କଲେ ମଧ୍ୟ ତାଙ୍କୁ ଦୋଷ ଲାଗେ ନାହିଁ, ତେବେ ଏହା ତାଙ୍କର ମହିମା ଦର୍ଶାଇବା ପାଇଁ ଲେଖାଯାଇଥାଏ, ଏହା ବିଧି ନୁହେଁ । ଭୋଗ ଭୋଗିବା ପାଇଁ ଏ କଥା କୁହାଯାଇ ନାହିଁ । ଗୀତାରେ ଜୀବନ୍ମୁକ୍ତଙ୍କ ପାଇଁ କୁହାଯାଇଛି ଯେ "ଯାହାର ଅହଂକୃତ ଭାବ ନାହିଁ ଏବଂ ଯାହାର ବୁଦ୍ଧି ଲିପ୍ତ ହୁଏ ନାହିଁ, ସେ ସମସ୍ତ ପ୍ରାଣୀଙ୍କୁ ମାରି ମଧ୍ୟ କାହାକୁ ମାରେ ନାହିଁ କି ଆବଦ୍ଧ ହୁଏ ନାହିଁ" ।* ଏପରି କଥନର ଅର୍ଥ ନୁହେଁ ଯେ ଜୀବନ୍ମୁକ୍ତ ମହାତ୍ମା ପ୍ରାଣୀମାନଙ୍କୁ ମାରନ୍ତି ।

---

* ଯସ୍ୟ ନାହଙ୍କୃତୋ ଭାବୋ ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ ।
ହତ୍ୱାପି ସ ଇମାଁଲ୍ଲୋକାନ୍ନ ହନ୍ତି ନ ନିବଧ୍ୟତେ ॥ (ଗୀତା ୧୮ । ୧୭)

**ପ୍ରଶ୍ନ**—ଗୁରୁ କଲେ ସେ ଶକ୍ତିପ୍ରବେଶ କରାଇବେ; ତେଣୁ ଗୁରୁ କରିବା ତ ନିହାତି ଆବଶ୍ୟକ?

**ଉତ୍ତର**—ଶକ୍ତିପ୍ରବେଶ କୌଣସି ଖେଳ ତାମସା ନୁହେଁ । ବର୍ତ୍ତମାନ ସମୟରେ ଶକ୍ତିପ୍ରବେଶ କଥା ପ୍ରାୟ ଦେଖାଯାଏ ନାହିଁ । ଦେଖାଯିବା କଥା ଦୂରେ ଥାଉ, ପଢ଼ିବାକୁ ମଧ୍ୟ ମିଳେ ନାହିଁ । ଜଣେ ସନ୍ଥ ଥିଲେ । ଜଣେ ଲୋକ ତାଙ୍କୁ ବାରମ୍ବାର ଅନୁରୋଧ କଲା ଯେ ଆଜ୍ଞା! ମୋ'ଠାରେ ଶକ୍ତିପ୍ରବେଶ କରାନ୍ତୁ । ସନ୍ଥ ଜଣଙ୍କ କହିଲେ, ଶକ୍ତିପ୍ରବେଶ କୌଣସି ସାଧାରଣ କଥା ନୁହେଁ; ତାହା ତୁମେ ସହ୍ୟ କରି ପାରିବ ନାହିଁ, ମରିଯିବ । ତଥାପି ସେ ଶୁଣିଲା ନାହିଁ, କହିଲା ଯେମିତି ହେଉ ପଛେ କରାଇଦିଅନ୍ତୁ । ସନ୍ଥ ଶକ୍ତିପ୍ରବେଶର ସାମାନ୍ୟ ପ୍ରଭାବ ଦେଖାଇବାରୁ ସେ ଲୋକ ଜଣକ ବ୍ୟତିବ୍ୟସ୍ତ ହୋଇଗଲା ଏବଂ ଜୋର୍‌ରେ ପାଟି କରି କହିଲା, ''ମୋର ସ୍ତ୍ରୀ, ପୁତ୍ର, ମାଆ, ବାପା ସମସ୍ତେ ଗ୍ୱଲିଗଲେ! ସାରା ସଂସାର ନଷ୍ଟ ହୋଇଗଲା! ମୁଁ କୁଆଡ଼େ ଯିବି! ମୋତେ ରକ୍ଷା କର! ରକ୍ଷା କର!!'' ତାତ୍ପର୍ଯ୍ୟ ହେଲା, ଶକ୍ତିପ୍ରବେଶ କରୁଥିବା ବ୍ୟକ୍ତି ସାଧାରଣ ନୁହେଁ ଏବଂ ଶକ୍ତିପ୍ରବେଶକୁ ସହ୍ୟ କରୁଥିବା ବ୍ୟକ୍ତି ମଧ୍ୟ ସାଧାରଣ ନୁହେଁ ।

**ପ୍ରଶ୍ନ**—ଚେଲା କରିବା ପଛରେ କାରଣ ରହିଛି । ଲୋକେ ଯେପରି ଖ୍ରୀଷ୍ଟିଆନ ଓ ମୁସଲମାନ ହୋଇ ନ ଯିବେ, ସେଥିପାଇଁ ଗୁରୁମାନେ ଚେଲା କରୁଛନ୍ତି, ତେଣୁ ଚେଲା କରିବାରେ ଦୋଷ କ'ଣ?

**ଉତ୍ତର**—ଏହା ଏକବାରେ ମିଛ କଥା! ଯେଉଁମାନେ ଖ୍ରୀଷ୍ଟିଆନ ଓ ମୁସଲମାନ ହେବାକୁ ଇଚ୍ଛୁକ, ସେମାନେ ଗୁରୁଙ୍କ ନିକଟକୁ କଦାପି ଆସିବେ ନାହିଁ । ଯଦି ଚେଲା ନ କଲେ କେହି ଖ୍ରୀଷ୍ଟିଆନ ବା ମୁସଲମାନ ହୋଇଯାଏ, ତେବେ ଗୁରୁଙ୍କୁ ଦୋଷ ଲାଗିବ ନାହିଁ । ମାତ୍ର ଲୋକମାନଙ୍କୁ ଚେଲା କରି ସେମାନଙ୍କୁ ଅନ୍ୟ ସ୍ଥାନକୁ ଯିବାକୁ ନ

ଦେବାର ଏବଂ ନିଜେ ସେମାନଙ୍କର ଉଦ୍ଧାର କରି ନ ପାରିବାର ଦୋଷ ଗୁରୁ ହୋଇଥିବା ବ୍ୟକ୍ତିକୁ ଅବଶ୍ୟ ଲାଗିବ। ଚେଲା କରି ଦେବାରୁ ଚେଲା ଭଗବାନଙ୍କ ନିକଟରେ ଶରଣ ନ ଯାଇ ଗୁରୁଙ୍କ ନିକଟରେ ଶରଣ ଗଲା, ଭଗବାନଙ୍କ ସହିତ ସମ୍ବନ୍ଧ ନ କରି ଗୁରୁଙ୍କ ସହିତ ସମ୍ବନ୍ଧ କଲା—ଏହା ବିରାଟ ଦୋଷ।

**ପ୍ରଶ୍ନ**—ଲୋକେ କହନ୍ତି—**'ଗୁରୁ କରିବ ଜାଣି, ପାଣି ପିଇବ ଛାଣି'**, ତେବେ ଗୁରୁଙ୍କୁ ଜାଣିବାର ଉପାୟ କ'ଣ? ଗୁରୁଙ୍କର ପରୀକ୍ଷା କିପରି କରିବା?

**ଉତ୍ତର**—ଗୁରୁଙ୍କର ପରୀକ୍ଷା ଆପଣ କରି ପାରିବେ ନାହିଁ। ଯଦି ଆପଣ ଗୁରୁଙ୍କର ପରୀକ୍ଷା କରି ପାରିବେ, ତା'ହେଲେ ତ ଆପଣ ଗୁରୁଙ୍କର ମଧ୍ୟ ଗୁରୁ ହୋଇଗଲେ! ଗୁରୁଙ୍କୁ ପରୀକ୍ଷା କରି ପାରୁଥିବା ଲୋକ କ'ଣ ଗୁରୁଙ୍କ ଠାରୁ ଛୋଟ? ପରୀକ୍ଷା କରୁଥିବା ଲୋକ ଅବଶ୍ୟ ବଡ଼। ଏହି ପରିପ୍ରେକ୍ଷୀରେ ଆପଣ ଗୁରୁ ନ କରି ସତ୍ସଙ୍ଗ ଓ ସ୍ୱାଧ୍ୟାୟ କରନ୍ତୁ ଏବଂ ସେଥିରୁ ଯେଉଁ ଉତ୍ତମ ତଥ୍ୟ ମିଳିବ, ତାହାକୁ ଧାରଣ କରନ୍ତୁ। ଯାହାଙ୍କ ସଙ୍ଗଲାଭରେ ପରମାତ୍ମପ୍ରାପ୍ତି ନିମନ୍ତେ ନିଷ୍ଠା ବୃଦ୍ଧି ହୁଏ, ଦୁର୍ଗୁଣ ଓ ଦୁରାଗ୍ରହ ସ୍ୱାଭାବିକଭାବରେ ଦୂର ହୋଇ ସଦ୍‌ଗୁଣ ଓ ସଦାଗ୍ରହ ପ୍ରକାଶ ପାଏ, ଭଗବାନଙ୍କ ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ ବୃଦ୍ଧି ହୁଏ, ପ୍ରଶ୍ନ ନ କରି ମଧ୍ୟ ଆପେ ଆପେ ସନ୍ଦେହଗୁଡ଼ିକର ସମାଧାନ ହୋଇଯାଏ, ବିଶେଷଭାବରେ ଭଗବତ୍‌ସ୍ମୃତି ଜାଗ୍ରତ ହୁଏ ଏବଂ ଯିଏ ଆମଠାରୁ କିଛି ପାଇବାର ଆଶା ରଖନ୍ତି ନାହିଁ, ସେହିପରି ସନ୍ଥଙ୍କର ସଙ୍ଗ କରନ୍ତୁ। ତାଙ୍କ ସହିତ ଗୁରୁ-ଶିଷ୍ୟ ସମ୍ବନ୍ଧ ନ କରି ତାଙ୍କଠାରୁ ଲାଭାନ୍ୱିତ ହୁଅନ୍ତୁ। ସେଠାରେ ଯଦି କୌଣସି ଦୋଷ ଦେଖାଯାଏ, ବିପରୀତ ଭାବ ଅଥବା ଆଚରଣ ଦେଖାଯାଏ, ସେଠାରୁ ଦୂରେଇ ଯାଆନ୍ତୁ।

ବାସ୍ତବରେ ଗୁରୁଙ୍କୁ ପରୀକ୍ଷା କରିବା ସମ୍ଭବ ନୁହେଁ, ନିଜକୁ ହିଁ ପରୀକ୍ଷା କରାଯାଇ ପାରେ । ଏ ବିଷୟରେ ଗୋଟିଏ ଉପଯୋଗୀ କାହାଣୀ ଅଛି । ଜଣେ ଯୁବକ ରାଜା ଥିଲେ । ଥରେ ସେ ନିଜ ରାଜ୍ୟର ବୟୋଜ୍ୟେଷ୍ଠ ଓ ବୁଦ୍ଧିମାନ୍ ଲୋକମାନଙ୍କୁ ଡାକି ପଚାରିଲେ, ‘‘ଆପଣମାନେ ସତ କଥା କହନ୍ତୁ ଯେ ମୋ ବୁଢ଼ାବାପାଙ୍କ ସମୟରେ ରାଜ୍ୟ ଠିକ୍‌ଭାବେ ଚାଲୁଥିଲା କିମ୍ବା ବାପାଙ୍କ ସମୟରେ ଠିକ୍‌ଭାବେ ଚାଲୁଥିଲା ଅଥବା ଏବେକାର ରାଜ୍ୟ ଠିକ୍‌ଭାବରେ ଚାଲୁଛି? ଆପଣମାନେ ତିନି ଜଣଙ୍କର ରାଜୁତି ଦେଖିଛନ୍ତି, କାହାର ରାଜୁତି ଶ୍ରେଷ୍ଠ?’’ ଏହା ଶୁଣି ସମସ୍ତେ ନୀରବ ରହିଲେ । ସେମାନଙ୍କ ଭିତରୁ ଜଣେ ବୃଦ୍ଧ କହିଲେ, ‘‘ମହାରାଜ! ଆମ୍ଭେମାନେ ଆପଣଙ୍କର ପ୍ରଜା, ଆପଣ ଆମର ସ୍ୱାମୀ । ଆପଣଙ୍କ ପ୍ରଶ୍ନର ନିର୍ଣ୍ଣୟ ଆମେ କିପରି କରି ପାରିବୁ? ଆମେ ଆପଣଙ୍କୁ ପରୀକ୍ଷା କରିବାକୁ ସମର୍ଥ ନୋହୁଁ, କିନ୍ତୁ ମୋତେ ପଚାରିଲେ ମୁଁ ମୋ ନିଜ କଥା କହି ପାରିବି ।’’ ରାଜା କହିଲେ—ଠିକ୍ ଅଛି, ତୁମେ ତୁମ ନିଜ କଥା କୁହ । ସେହି ବୃଦ୍ଧ ଜଣଙ୍କ କହିଲେ—ମହାରାଜ! ଯେତେବେଳେ ଆପଣଙ୍କର ବୁଢ଼ାବାପା ରାଜୁତି କରୁଥିଲେ, ସେତେବେଳେ ମୁଁ କୋଡ଼ିଏ ବାଇଶି ବର୍ଷର ଭେଣ୍ଡା ଥିଲି, ହାତରେ ଗୋଟେ ଠେଙ୍ଗା ଧରୁଥିଲି । କୁସ୍ତିକସରତ, ବାଡ଼ିଖେଳ ଇତ୍ୟାଦିରେ ପାରଙ୍ଗମ ଥିଲି । ଦିନେ ବାଟରେ ଯାଉ ଯାଉ ମୁଁ କୌଣସି ଜଙ୍ଗଲରେ କେହି ଜଣେ କାନ୍ଦୁଥିବାର ଶୁଣିଲି । ଶବ୍ଦରୁ ଜଣାପଡ଼ିଲା ଯେ ଜଣେ ସ୍ତ୍ରୀଲୋକ କାନ୍ଦୁଛି, କାରଣ ସ୍ତ୍ରୀଲୋକଙ୍କର ସ୍ୱର ପ୍ରାୟ କୋମଳ । ମୁଁ ସେଆଡ଼କୁ ଯାଇ ଦେଖିଲି ଯେ ସୁନ୍ଦର ବସ୍ତ୍ର ଓ ଆଭୂଷଣ ପିନ୍ଧିଥିବା ଜଣେ ସ୍ତ୍ରୀଲୋକ କାନ୍ଦୁଛି । ମୁଁ ପଚାରିଲି—‘ତୁମେ କାନ୍ଦୁଛ କାହିଁକି?’ ସେ ମୋତେ ଦେଖି ଡରିଗଲା । ମୁଁ ତାକୁ ଆଶ୍ୱାସନା ଦେଇ କହିଲି—ରେ ମା! ଡରିବାର କୌଣସି କାରଣ ନାହିଁ, କ'ଣ ହୋଇଛି କହ ।

ସେ ମୋତେ କହିଲା—''ମୁଁ ମୋ ସମ୍ପର୍କୀୟମାନଙ୍କ ସହିତ ବାପଘରୁ ଶାଶୁଘରକୁ ଯାଉଥିଲି । ରାସ୍ତାରେ ଡାକୁ ଘେରିଗଲେ ଏବଂ ଧସ୍ତାଧସ୍ତି ଆରମ୍ଭ ହୋଇଗଲା । ମୁଁ ଭୟରେ ଜଙ୍ଗଲକୁ ପଳାଇ ଆସିଛି । ମୋତେ ଜଣା ନାହିଁ ଯେ ସେମାନଙ୍କର ଅବସ୍ଥା କ'ଣ ହେଲା? ଏବେ ମୁଁ କୁଆଡ଼େ ଯିବି, କ'ଣ କରିବି? ଶାଶୁଘର କୁଆଡ଼େ ଓ ବାପଘର କୁଆଡ଼େ ମୋତେ ଜଣା ନାହିଁ ।'' ମୁଁ ସେହି ସ୍ତ୍ରୀଲୋକକୁ ତାଙ୍କ ଶାଶୁଘର କୋଉ ଗାଆଁ ବୋଲି ପଚାରିବାରୁ ସେ ଗାଆଁ ନାଆଁ କହିଲା । ମୁଁ କହିଲି—ତୁମ ଶାଶୁ ଘର ଏଇ ପାଖରେ, ମୁଁ ସେଠାରେ ଛାଡ଼ିଦେଇ ଆସିବି, ଡର ନାହିଁ । ମୁଁ ତାକୁ ତା'ର ଶଶୁରଙ୍କ ନାଆଁ ପଚାରିବାରୁ ସେ ତା'ଶଶୁରଙ୍କ ନାମ ଲେଖିଦେଲା । ମୁଁ କହିଲି—ମୁଁ ତୁମ ଶଶୁରଙ୍କୁ ଜାଣିଛି । ସେଠାରେ ଛାଡ଼ିଦେବି ।

ରାତି ହୋଇଯାଇଥିଲା । ମୁଁ ତାକୁ ନେଇ ତା'ଶଶୁର ଘରେ ପହଞ୍ଚିଲି । ସେଠାରେ ସମସ୍ତେ ଚିନ୍ତିତ ଥିଲେ ଯେ 'ଆମେ ତ ଡାକୁମାନଙ୍କ ସାଥିରେ ଧସ୍ତାଧସ୍ତି କରିବାରେ ମାତିଗଲେ, ବୋଧହୁଏ ସେମାନେ ଆମ ବୋହୂକୁ ମାରି ଦେଇଥିବେ! ସେ ବହୁତ ମୂଲ୍ୟବାନ୍ ଗହଣା ପିନ୍ଧିଥିଲା । ସେଗୁଡ଼ିକୁ ବୋଧେ ଛଡ଼ାଇ ନେଇଥିବେ; ଏବେ ତାକୁ ପାଇବା କିପରି?' ଇତ୍ୟାଦି । ସେହି ସମୟରେ ନିଜର ବୋହୂକୁ ଦେଖି ସେମାନେ ଅତି ଖୁସୀ ହେଲେ । ସେହି ସ୍ତ୍ରୀଲୋକ ଜଣକ ଘରର ଅନ୍ୟ ସଦସ୍ୟମାନଙ୍କୁ କହିଲା—''ଏ ମୋତେ ବାପା ପରି ଆଦର ଓ ସ୍ନେହର ସହ ଏଠାରେ ପହଞ୍ଚାଇ ଦେଲେ ।'' ଘରଲୋକେ ବାଧ୍ୟ କରି ମୋତେ ଚାରି ପାଞ୍ଚ ଶହ ଟଙ୍କା ଦେଉଥିଲେ । କିନ୍ତୁ ମୁଁ କହିଲି—''ଏ କାମ ମୁଁ ଟଙ୍କା ପାଇଁ କରି ନାହିଁ, ମଜୁରି କରି ନାହିଁ । ମୁଁ ମୋର କର୍ତ୍ତବ୍ୟ ମନେକରି ଏପରି କରିଛି ।'' ସେ ବହୁତ ବାଧ୍ୟ କରୁଥିଲେ ମଧ୍ୟ ମୁଁ କିଛି ନ ନେଇ ସେଠାରୁ ବିଦାୟ ନେଲି । ମୋତେ ଏଥିପାଇଁ ବଡ଼ ଖୁସୀ ଲାଗିଲା ଯେ

ଯାହାହେଉ ମୋ ଦ୍ୱାରା ଜଣେ ଅବଳାର ସେବା ହୋଇ ପାରିଲା । ଏହା ଆପଣଙ୍କ ବୁଢ଼ାବାପାଙ୍କ ରାଜୁତି ସମୟର ଘଟଣା ।

ଦୀର୍ଘ ସମୟ ବିତିଯିବା ପରେ ମୋର ବ୍ୟବସାୟରେ କ୍ଷତି ହୋଇଗଲା ଏବଂ ପାଖରେ ଟଙ୍କାପଇସା ମଧ୍ୟ ନ ଥାଏ । ସେତେବେଳେ ମୋ ମନରେ ବିଚ୍ୱର ଆସିଲା ଯେ ମୁଁ ସେହି ସ୍ତ୍ରୀ ଲୋକଟିକୁ ଛାଡ଼ିଦେଇ ଭୁଲ୍ କଲି! ଗୋଟେ ଚ୍ୱପୁଡ଼ା ଦେଇଥିଲେ ଦଶ ପନ୍ଦର ହଜାର ଟଙ୍କାର ଗହଣା ମିଳିଯାଇ ଥାଆନ୍ତା । ଆଜି ଆଉ ପଇସାର ଅଭାବ ନ ଥାନ୍ତା । ତା'ଶଶୁର ମଧ୍ୟ ଟଙ୍କା ଦେଉଥିଲେ, ତାହା ବି ମୁଁ ଆଣିଲି ନାହିଁ ଆଉ ଏବେ ଭାବିଲେ କ'ଣ ହେବ, ସୁଯୋଗ ତ ହାତଛଡ଼ା ହୋଇଗଲାଣି । ଏହା ଆପଣଙ୍କ ବାପାଙ୍କ ରାଜୁତି ସମୟର କଥା । ମହାରାଜ! ଏବେକାର କଥା ତ ଆପଣଙ୍କ ଆଗରେ କହିବାକୁ ଲାଜ ମାଡୁଛି । କାରଣ ଆପଣ ମୋର ପିତା ସଦୃଶ । କିନ୍ତୁ ଆପଣ ପଚ୍ୱରୁଛନ୍ତି ଯେହେତୁ ବାଧ୍ୟ ହୋଇ କହୁଛି । ଏବେ ମୋ ମନରେ ଭାବନା ଆସୁଛି ଯେ, ସେହି ସ୍ତ୍ରୀଲୋକଟିକୁ ଡରାଇ-ଧମକାଇ ଅଥବା ବୁଝାଇସୁଝାଇ ଯଦି ମୁଁ ମୋର ପତ୍ନୀରୂପେ ଗ୍ରହଣ କରିଥାନ୍ତି, ତେବେ ଗହଣା ବି ମିଳିଯାଇ ଥାଆନ୍ତା ଏବଂ ଆଜିର ବୃଦ୍ଧାବସ୍ଥାରେ ପତ୍ନୀ ହିସାବରେ ସେ ମୋର ସେବା ମଧ୍ୟ କରିଥାଆନ୍ତା! ମହାରାଜ! ମୁଁ ମୋ ନିଜ କଥା କହିଦେଲି । ଆପଣଙ୍କ ରାଜ୍ୟ କିପରି ଚ୍ୱଲୁଛି, ତାହା ମୁଁ କିପରି ବା କହିବି! ରାଜା ବୁଝିଗଲେ ଯେ ବୁଢ଼ା ବହୁତ ବୁଦ୍ଧିମାନ୍! ନିଜ କଥା କହି ଦର୍ଶାଇ ଦେଲା ଯେ ରାଜା କିପରି । ଯେପରି ରାଜା, ସେପରି ପ୍ରଜା—**'ଯଥା ରାଜା ତଥା ପ୍ରଜା ।'**

ତାତ୍ପର୍ଯ୍ୟ ହେଲା, ଆମେ ଗୁରୁଙ୍କୁ ପରୀକ୍ଷା କରି ପାରିବା ନାହିଁ, କିନ୍ତୁ ନିଜକୁ ପରୀକ୍ଷା କରି ଜାଣି ପାରିବା ଯେ ତାଙ୍କ ସଙ୍ଗରୁ ଆମର ଭାବନା ଉପରେ କି ପ୍ରଭାବ ପଡୁଛି? ଆମର ଆଚରଣ ଉପରେ କି ପ୍ରଭାବ ପଡୁଛି? ଆମର ଜୀବନଧାରାରେ କି ପରିବର୍ତ୍ତନ ହେଉଛି? ଆମର ରାଗ (ଆସକ୍ତି), ଦ୍ୱେଷ, କାମ ଓ କ୍ରୋଧ କେତେ କମିଛି?

**ପ୍ରଶ୍ନ**—ଇତିହାସ ଗ୍ରନ୍ଥରେ ଏପରି ଅନେକ ଉଦାହରଣ ମଧ୍ୟ ଦେଖିବାକୁ ମିଳେ, ଯାହାଦ୍ୱାରା ଗୁରୁ କରିବା ଅନିବାର୍ଯ୍ୟ ବୋଲି ପ୍ରମାଣିତ ହୁଏ?

**ଉତ୍ତର**—ଇତିହାସ ଗ୍ରନ୍ଥଗୁଡ଼ିକୁ ଆଧାର କରି ସତ୍ୟ ନିର୍ଣ୍ଣୟ କରିବା ସମ୍ଭବ ନୁହେଁ। କାରଣ ଇତିହାସର ତଥ୍ୟଗୁଡ଼ିକ ସୁଦୃଢ଼ ନୁହେଁ, ସେଗୁଡ଼ିକ ଫମ୍ପା। କେଉଁ ଲୋକ ପୂର୍ବର କେଉଁ ସମ୍ବନ୍ଧରୁ ଏବଂ କେଉଁ ପରିସ୍ଥିତିରେ କ'ଣ କଲା ଓ କାହିଁକି କଲା, ଇତିହାସରୁ ଏହାର ବାସ୍ତବିକତା ପୂର୍ଣ୍ଣରୂପେ ଜାଣି ହୁଏ ନାହିଁ। ତେଣୁ ଇତିହାସରେ ଲିଖିତ ଭଲ ଭଲ କଥାରୁ ମାର୍ଗଦର୍ଶନ ମିଳିପାରେ, କିନ୍ତୁ ସତ୍ୟର ନିର୍ଣ୍ଣୟ ଶାସ୍ତ୍ରୋକ୍ତ ବିଧି ଓ ନିଷେଧରୁ କରି ହୁଏ। ଇତିହାସଠାରୁ ବିଧି ବଳବାନ୍ ଏବଂ ବିଧିଠାରୁ ନିଷେଧ ବଳବାନ୍।

ଗୁରୁ ହେବା ପାଇଁ ଯେଉଁମାନଙ୍କର ଇଚ୍ଛା ରହିଛି, ସେଇମାନେ ହିଁ ଗୁରୁ ସମ୍ବନ୍ଧୀୟ ତଥ୍ୟଗୁଡ଼ିକର ଅଧିକ ପ୍ରଚାର କରୁଛନ୍ତି। ତେଣୁ ଆଜିର କଳିଯୁଗରେ ସାବଧାନ ରହିବା ନିତାନ୍ତ ଆବଶ୍ୟକ।

□□□

# ସନ୍ନ୍ୟାସୀ ସାଧକ ଓ କୀର୍ତ୍ତନକାରମାନଙ୍କୁ ବିନମ୍ର ନିବେଦନ

*[ଉଦ୍ଧୃତ ଲେଖାଟି ବହୁ ସମୟ ପୂର୍ବରୁ ନବମ ବର୍ଷର (ବିକ୍ରମାବ୍ଦ ୧୯୯୧, ସନ ୧୯୩୪ରେ) 'କଲ୍ୟାଣ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ସମୟରେ ଏହାର ବିଶେଷ ଉପଯୋଗିତା ଅନୁଭବ କରି ନିମ୍ନରେ ଉଦ୍ଧାର କରାଯାଉଛି ।]*

ଶ୍ରୀପରମାତ୍ମଦେବଙ୍କର ଓ ତାଙ୍କ ଭକ୍ତମାନଙ୍କର କୃପା ଏବଂ ଆଜ୍ଞାରେ ଆଜି ମୁଁ ଏହି ଲେଖାରେ ସନ୍ନ୍ୟାସୀ ସାଧକମାନଙ୍କ ଆଚରଣ ଓ କୀର୍ତ୍ତନ ସମ୍ବନ୍ଧରେ ମୋତେ ଭଲ ଲାଗୁଥିବା ଭାବଗୁଡ଼ିକୁ ବ୍ୟକ୍ତ କରିବା ପାଇଁ ଚେଷ୍ଟା କରୁଛି । ଯଦ୍ୟପି ମୁଁ ନିଜକୁ ଏପରି ଲେଖିବା, ଉପଦେଶ ଓ ଆଦେଶ ଦେବାକୁ କୌଣସି ପ୍ରକାରେ ବି ଅଧିକାରୀ ମନେକରୁ ନାହିଁ ଏବଂ ମୋ ଦ୍ୱାରା ମଧ୍ୟ ଏ ସମସ୍ତ ଆଚରଣ ପୂର୍ଣ୍ଣରୂପେ ହୋଇ ପାରୁ ନାହିଁ, ତଥାପି ମୋତେ ଏପରି ଶାସ୍ତ୍ରୀୟ ଓ ସନ୍ଥମାନଙ୍କର ଆଦରଣୀୟ ଆଗ୍ରହ ଓ ବିଗ୍ରହ ଭଲ ଲାଗୁଛି, ତେଣୁ ଏପରି ଚର୍ଚ୍ଚାରେ ସମୟ ଅତିବାହିତ କରିବାକୁ ନିଜର ସୌଭାଗ୍ୟ ମନେକରି କିଛିଟା ଲେଖିବାକୁ ପ୍ରୟାସ କରୁଛି । ଆଶା କରେ, ମୋର ଅନ୍ୟାନ୍ୟ ସାଧକ ଭାଇମାନେ ମଧ୍ୟ ଏପରି ବିଗ୍ରହଧାରାକୁ କେବେ କେମିତି ବ୍ୟକ୍ତ କରିବେ; କାରଣ ଏପରି କଲେ ମୋ ପରି ଲୋକଙ୍କୁ ସେମାନଙ୍କ ବିଗ୍ରହ ବିଷୟରେ ଅବଗତ ହେବା ପାଇଁ ସୁଯୋଗ ମିଳିବ ଏବଂ ସେହି ସତ୍ସଙ୍ଗୀ ଭାଇମାନଙ୍କର ମଧ୍ୟ କିଛି ସମୟ ସତ୍‌ଚର୍ଚ୍ଚାରେ ଅତିବାହିତ ହେବ । ସନ୍ଥମହାତ୍ମା ଓ ଶାସ୍ତ୍ର ପ୍ରଭୃତିଙ୍କ ବଚନ ଅନୁସାରେ ସତ୍ସଙ୍ଗରେ ଶୁଣିଥିବା ଏବଂ ଗ୍ରନ୍ଥମାନଙ୍କରୁ ପଢ଼ିଥିବା ଆଲୋଚନା ମଧ୍ୟରୁ ଏଠାରେ ଯାହା କିଛି ଲେଖିବାକୁ ପ୍ରୟାସ କରୁଛି, ସେଥିମଧ୍ୟରେ ଯଦି କୌଣସି

କଥା ଅନୁଚିତ ମନେହୁଏ, ତେବେ ବିଜ୍ଞ ମହାନୁଭାବ ନିଜର ସନ୍ତାନ ମନେକରି ମୋତେ କୃପାପୂର୍ବକ କ୍ଷମା କରିବେ ।

ସାଧକ ହର୍ଷ, ଶୋକ, କାମ, କ୍ରୋଧ ଆଦିରୁ ପୃଥକ୍ ରହିବା ପାଇଁ ସମ୍ପୂର୍ଣ୍ଣ ପ୍ରଯତ୍ନ କରିବା ଉଚିତ । ଅନ୍ତତଃ ଏଗୁଡ଼ିକର ବଶୀଭୂତ ହେବା ଅନୁଚିତ । ଲୋକେ ଯେପରି ଭୂତ, ପ୍ରେତ, ସର୍ପ, ବ୍ୟାଘ୍ର ଆଦିଙ୍କୁ ଭୟ କରନ୍ତି, ମୋ ପରି ଲୋକଙ୍କୁ ରାଗ-ଦ୍ୱେଷର ସ୍ୱରୂପ କାମିନୀ ଓ କାଞ୍ଚନକୁ ସେହିପରି ଭୟ କରିବା ଉଚିତ ଏବଂ ବୁଝିବା ଉଚିତ ଯେ ଯେଉଁ ମୁହୂର୍ତ୍ତରେ ସନ୍ନ୍ୟାସୀ ସାଧକର କାମିନୀ ଓ କାଞ୍ଚନ ପ୍ରତି ଆସକ୍ତି ହେଲା, ସେହି ମୁହୂର୍ତ୍ତରେ ତା'ର ପତନ ହେଲା ।

ରାଗ-ଦ୍ୱେଷ, କାମ-କ୍ରୋଧ ଆଦିକୁ ଅନ୍ତଃକରଣର ଧର୍ମ ବୋଲି କଦାପି ବୁଝିବା ଉଚିତ ନୁହେଁ। ଏଗୁଡ଼ିକ ଧର୍ମ ନୁହନ୍ତି, କେବଳ ବିକାରମାତ୍ର । ଯେ ଏଗୁଡ଼ିକୁ ଅନ୍ତଃକରଣର ଧର୍ମ ମନେକରେ, ଶରୀର ବିନାଶ ହେବାପର୍ଯ୍ୟନ୍ତ ଏଗୁଡ଼ିକ ରହୁଥିବା କାରଣରୁ ସେ ଏଗୁଡ଼ିକ ରହିବା ଅନିବାର୍ଯ୍ୟ ବୋଲି ଧରିନିଏ । ଫଳରେ ନିଜକୁ ଜ୍ଞାନୀ ମନେକରି ମଧ୍ୟ ସେ ଏପରି ଭାବିନିଏ ଯେ, ଅନ୍ତଃକରଣ ରହିଥିବା ପର୍ଯ୍ୟନ୍ତ ରାଗ-ଦ୍ୱେଷ, କାମ-କ୍ରୋଧାଦି ଅବଶ୍ୟ ରହିବେ, ମୋର ଏଗୁଡ଼ିକ ସହିତ ସମ୍ବନ୍ଧ ନାହିଁ। ବାସ୍ତବରେ ଏପରି ମନେ କରିବା ଭ୍ରମ । ଯେ ଏପରି ମନେକରେ ଏବଂ ରାଗ-ଦ୍ୱେଷ, କାମ-କ୍ରୋଧାଦିରୁ ତ୍ରାହି ପାଇବା ପାଇଁ ଚେଷ୍ଟା କରେ ନାହିଁ, ସେ ଜ୍ଞାନୀ ହେବା ତ ଦୂରର କଥା, ଉଚ୍ଚକୋଟିର ସାଧକ ମଧ୍ୟ ନୁହେଁ।

ଏହା ନିଶ୍ଚିତ ଯେ ପ୍ରକୃତ ଜ୍ଞାନୀଠାରେ କାମ, କ୍ରୋଧାଦି ଦୋଷ ଆଦୌ ରହେ ନାହିଁ। ଯିଏ ଭଲ ପ୍ରବଚନ ଦେଇପାରେ, ଶାସ୍ତ୍ରବଚନ ଦ୍ୱାରା ଉତ୍ତମରୂପେ ବ୍ରହ୍ମର ନିରୂପଣ କରିପାରେ ଅଥବା ଜ୍ଞାନମୂଳକ ସୁନ୍ଦର ସୁନ୍ଦର ତର୍କପ୍ରଧାନ ପ୍ରବନ୍ଧ ଲେଖିପାରେ, ସେ ଯେ ଜ୍ଞାନୀ, ଏପରି ବୁଝିବା ଉଚିତ ନୁହେଁ। ଏସବୁ ତ ଗ୍ରନ୍ଥ ଅଧ୍ୟୟନ କଲେ ମଧ୍ୟ ହୋଇଯାଇ ପାରେ ।

ରଙ୍ଗମଞ୍ଚରେ ବ୍ୟକ୍ତି ଶୁକଦେବଙ୍କ ଭୂମିକାରେ ଅଭିନୟ କରିପାରେ। କିନ୍ତୁ ସେ କ'ଣ ଜ୍ଞାନୀ ହୋଇଯିବ? ଯେ ଅଜ୍ଞାନରୂପକ ସମୁଦ୍ରରୁ ସମ୍ପୂର୍ଣ୍ଣ ପାର ହୋଇଯାଇଛି, ସେ ହିଁ ଜ୍ଞାନୀ। ରାଗ, ଦ୍ୱେଷ, କାମ, କ୍ରୋଧାଦି ଅଜ୍ଞାନରେ ଥାଆନ୍ତି। ଜ୍ଞାନରେ ଏଗୁଡ଼ିକ ଲେଶମାତ୍ର ବି ନ ଥାନ୍ତି।

ବାସ୍ତବିକ ବ୍ରାହ୍ମୀସ୍ଥିତିରେ ପହଞ୍ଚିବା ପୂର୍ବରୁ ଯେଉଁଲୋକେ କେବଳ ପୁସ୍ତକୀୟ ଜ୍ଞାନର ଆଧାର ଉପରେ ନିଜକୁ ଜ୍ଞାନୀ ମନେ କରନ୍ତି ଏବଂ ନିଜକୁ ବିଧି ଓ ନିଷେଧରୁ ମୁକ୍ତ ମନେକରି ସାଧନା ଛାଡ଼ି ଦିଅନ୍ତି, ସେମାନେ ପ୍ରାୟ ପତିତ ହୋଇଯାଆନ୍ତି। କାରଣ ଅଜ୍ଞାନ ଥିବାପର୍ଯ୍ୟନ୍ତ ଇନ୍ଦ୍ରିୟମାନଙ୍କର ଭୋଗ ପ୍ରତି ଆସକ୍ତି ଥାଏ ଏବଂ ଆସକ୍ତି ହିଁ ପାପର ପ୍ରଧାନ କାରଣ। ପୁଣି ଯେଉଁଠି କାମ-କ୍ରୋଧାଦିକୁ ଅନ୍ତଃକରଣର ଅନିବାର୍ଯ୍ୟ ଧର୍ମ ମନେ କରାଯାଏ, ସେଠାରେ ଆଉ କଣ ବା କହିବା? ଅତଏବ ମୋ ପରି ସାଧକମାନଙ୍କୁ ଅତ୍ୟନ୍ତ ସାବଧାନତାର ସହିତ ଦୁର୍ଗୁଣରୁ ନିବୃତ୍ତ ହେବା ପାଇଁ ସମ୍ପୂର୍ଣ୍ଣ ଓ ସର୍ବଦା ତତ୍ପର ରହିବା ଉଚିତ। ନିଜକୁ ରାଗ, ଦ୍ୱେଷ, କାମ, କ୍ରୋଧ, ଲୋଭ ଆଦି ବିକାରରୁ ସର୍ବଦା ମୁକ୍ତ ରଖିବା ଉଚିତ। ସନ୍ନ୍ୟାସ ଆଶ୍ରମରେ ତ ସାଧକ କଦାପି ଭୁଲ୍‌ରେ ମଧ୍ୟ ସ୍ତ୍ରୀ ଓ ଧନ ସହିତ କୌଣସି ସମ୍ବନ୍ଧ ରଖିବା ଉଚିତ ନୁହେଁ। ଏମାନଙ୍କର ସଙ୍ଗ କରିବା ଅନୁଚିତ। ସିଦ୍ଧ ମହାପୁରୁଷଙ୍କ ଠାରେ ଏପରି ଦୋଷ ଆଦୌ ନ ଥାଏ।

ମନେ ରଖିବା ଉଚିତ ଯେ ଭଣ୍ଡ ଜ୍ଞାନୀ ଅପେକ୍ଷା ଅଜ୍ଞାନୀ ହୋଇ ରହିବା ବରଂ ଭଲ; କାରଣ ଅଜ୍ଞାନୀ ଅନ୍ତତଃ ପାପକୁ ଭୟ କରେ। ଭଣ୍ଡ ତ ଜାଣିଶୁଣି ଭଣ୍ଡାମି ପାଇଁ ମଧ୍ୟ ପାପ କରେ। ତେଣୁ ଭଣ୍ଡାମିକୁ କଦାପି କଳ୍ପନାରେ ମଧ୍ୟ ସ୍ଥାନ ଦେବା ଅନୁଚିତ। ପ୍ରକୃତ ସନ୍ନ୍ୟାସୀ ହେବା ଉଚିତ; ଏବଂ—

**ଯାବଦାୟୁସ୍ତ୍ୱୟା ବନ୍ଦ୍ୟୋ ବେଦାନ୍ତୋ ଗୁରୁରୀଶ୍ୱରଃ।**
**ମନସା କର୍ମଣା ବାଚା ଶ୍ରୁତେରେବୈଷ ନିଶ୍ଚୟଃ।।**

(ତତ୍ତ୍ୱୋପଦେଶ ୮୬)

—ପରମ ପୂଜ୍ୟ ଆଗ୍ର୍ର୍ଯ୍ୟଙ୍କର ଏହି ଉକ୍ତି ଅନୁସାରେ ଶାସ୍ତ୍ରବିଧିକୁ ସର୍ବଦା ମାନିବା ଉଚିତ । ସନ୍ନ୍ୟାସୀଙ୍କ ପାଇଁ ପାଳନୀୟ କେତୋଟି ଧର୍ମ ନିମ୍ନରେ ପ୍ରଦତ୍ତ ହେଲା—

ଗୃହସ୍ଥମାନଙ୍କର ସଙ୍ଗ ନ କରନ୍ତୁ । କୌଣସି ସ୍ତ୍ରୀଲୋକର ଚିତ୍ରପଟ ମଧ୍ୟ ନ ଦେଖନ୍ତୁ । ଧନକୁ ସ୍ପର୍ଶ ନ କରନ୍ତୁ । କାହା ସହିତ କୌଣସି ସମ୍ବନ୍ଧ ସ୍ଥାପନ ନ କରନ୍ତୁ । କୌଣସି ବିଷୟରେ ମମତା ନ କରନ୍ତୁ । ମାନବଡ଼ିମା ଗ୍ରହଣ ନ କରନ୍ତୁ । ଅତି ସାବଧାନତାର ସହ ବୈରାଗ୍ୟର ସୁରକ୍ଷା କରନ୍ତୁ । ଇନ୍ଦ୍ରିୟଗଣଙ୍କୁ ସଂଯତ କରି ରଖନ୍ତୁ । ବସ୍ତୁସଂଗ୍ରହ ନ କରନ୍ତୁ । ଗୋଷ୍ଠୀଗଠନ ନ କରନ୍ତୁ । ଘର ନ କରନ୍ତୁ । ବୃଥାରେ କଥାବାର୍ତ୍ତା ନ କରନ୍ତୁ । ବ୍ରହ୍ମଚର୍ଯ୍ୟ ପାଳନ କରନ୍ତୁ । କାମ, କ୍ରୋଧ, ଲୋଭ ଆଦିରୁ ସର୍ବଦା ମୁକ୍ତ ରହନ୍ତୁ । କାହା ପ୍ରତି ଦ୍ୱେଷ ନ କରନ୍ତୁ । କାହା ପ୍ରତି ଆସକ୍ତ ନ ହୁଅନ୍ତୁ । ନିତ୍ୟ ଆତ୍ମଚିନ୍ତନ ଅଥବା ଭଗବତ୍‌ଚିନ୍ତନରେ ମଗ୍ନ ରହନ୍ତୁ ।

ଯେଉଁ ସନ୍ନ୍ୟାସୀ ଏହି ସନ୍ନ୍ୟାସ ଧର୍ମଗୁଡ଼ିକୁ ପାଳନ କରେ ନାହିଁ, ସେ ପ୍ରାୟ ପତିତ ହୋଇଯାଏ । ତେଣୁ ନିଜର ଆଶ୍ରମଧର୍ମକୁ ପୂର୍ଣ୍ଣରୂପେ ପାଳନ କରିବା ଉଚିତ । ବିଧି ଓ ନିଷେଧରୁ ଉର୍ଦ୍ଧ୍ୱକୁ ଗ୍ଲିଯାଇଥିବା ମହାପୁରୁଷଙ୍କ ଦ୍ୱାରା ମଧ୍ୟ ଲୋକସଂଗ୍ରହ ନିମନ୍ତେ ଆଦର୍ଶ ଶୁଭକର୍ମ ହିଁ ହୁଏ ।

ଯଦି ଭକ୍ତ ହେବା ପାଇଁ ଇଚ୍ଛା, ତେବେ ଭଗବାନଙ୍କର ଶରଣାପନ୍ନ ହୋଇ ସର୍ବଦା ତାଙ୍କୁ ଭଜିବା ଉଚିତ । ଧନ, ସମ୍ମାନ, ଯଶ ଇତ୍ୟାଦିର ଇଚ୍ଛାକୁ ମନରେ ସ୍ଥାନ ନ ଦେବା ଉଚିତ । ଲୋକ ଭକ୍ତ କହନ୍ତୁ ଓ ମାନନ୍ତୁ, ଏଭଳି ଆଶା କରିବା ଅନୁଚିତ । ପ୍ରେମ ସହକାରେ ଭଗବାନଙ୍କର ନାମ ଓ ଗୁଣ କୀର୍ତ୍ତନ କରିବା ଉଚିତ । ଯେତେ ଦୂର ସମ୍ଭବ ନିଜର ଭକ୍ତିକୁ ପରିପ୍ରକାଶ ନ କରିବା ଉଚିତ । ଲୋକେ ଆମକୁ ପୂଜା ଓ ସମ୍ମାନିତ କରିବାଭଳି ସୁଯୋଗ ସେମାନଙ୍କୁ ନ ଦେବା ଉଚିତ । ମାନବଡ଼ିମାରୁ ସର୍ବଦା ସାବଧାନତା ପୂର୍ବକ ଦୂରେଇ ରହିବା ବିଧେୟ ।

ସ୍ତ୍ରୀ ଓ ସ୍ତ୍ରୀସଙ୍ଗୀମାନଙ୍କର ସଙ୍ଗ କଦାପି ନ କରିବା ଉଚିତ । ଧନର ଲୋଭକୁ ମନରେ ସ୍ଥାନ ଦେବା ଅନୁଚିତ । ପ୍ରତିଷ୍ଠାକୁ ଶୂକରୀ ବିଷ୍ଠା ମନେ କରିବା ଉଚିତ ।

କୀର୍ତ୍ତନ କରିବା ଉଚିତ, ଖୁବ୍ କୀର୍ତ୍ତନ କରିବା ଉଚିତ; କିନ୍ତୁ ଲୋକରଞ୍ଜନ ଉଦ୍ଦେଶ୍ୟରେ ନ କରି ଭଗବାନଙ୍କ ପ୍ରୀତ୍ୟର୍ଥେ କରିବା ଉଚିତ । ଲୋକରଞ୍ଜନ ପାଇଁ କୀର୍ତ୍ତନ କଲେ ତାହା ବାହ୍ୟ ହୋଇଯିବ । କୀର୍ତ୍ତନ କରୁଥିବା ଲୋକଙ୍କ ମନରେ ଏହି ଭାବନା ଦୃଢ଼ ହୋଇଯିବା ଉଚିତ ଯେ, ମୋ ଭଗବାନ ନିଶ୍ଚିତରୂପେ ଏଠାରେ ବିଦ୍ୟମାନ ଏବଂ ମୁଁ ତାଙ୍କ ଆଗରେ ତାଙ୍କୁ ଖୁସୀ କରିବା ପାଇଁ ତାଙ୍କ ନାମ ଓ ଗୁଣ ଗାନ କରୁଛି । ଭଗବାନଙ୍କ ନାମ ଓ ଗୁଣର ଅର୍ଥ ଚିନ୍ତନପୂର୍ବକ ଭଗବାନଙ୍କ ଧ୍ୟାନ କରି କୀର୍ତ୍ତନରେ ବିଭୋର ହୋଇଯିବା ଉଚିତ । ଯଦି ଏପରି ଭାବ ନ ଆସେ, ତେବେ ଏପରି କରିବା ପାଇଁ ଅଭ୍ୟାସ କରିବା ଉଚିତ । କିନ୍ତୁ କେବେ ଏପରି ବିଚାର କରିବା ଉଚିତ ନୁହେଁ ଯେ, ମୋ କୀର୍ତ୍ତନ ଦ୍ୱାରା ଲୋକମାନେ, ଦର୍ଶକମଣ୍ଡଳୀ ଓ ଶ୍ରୋତାଗଣ ଖୁସୀ ହେଲେ କି ନାହିଁ, ସେମାନଙ୍କ ମନ ମୋ ପ୍ରତି ଆକୃଷ୍ଟ ହେଲା କି ନାହିଁ । ଭଗବାନଙ୍କ ନାମ ପ୍ରତି ଶ୍ରଦ୍ଧା କରନ୍ତୁ, ପ୍ରେମ କରନ୍ତୁ ଏବଂ ଶ୍ରଦ୍ଧା ଓ ପ୍ରେମରେ ବୁଡ଼ି ରହି ଭଗବାନଙ୍କ ନାମ ଗାନ କରନ୍ତୁ । ତେଣିକି ଆପଣଙ୍କ ମୁଖନିଃସୃତ ଗୋଟିଏ ନାମ ଚମତ୍କାରିତା ସୃଷ୍ଟି କରିଦେବ । ଶ୍ରୀ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ଶ୍ରୀମୁଖନିଃସୃତ ଗୋଟିଏ ନାମ ଶ୍ରୋତାକୁ ପାଗଳ କରି ଦେଉଥିଲା; କାରଣ ସେହି ନାମ ସହିତ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କର ପ୍ରେମଶକ୍ତି ସଂଲଗ୍ନ ଥିଲା ।

ଆଉ ଗୋଟିଏ କଥା ମନେ ରଖିବା ଉଚିତ । ଭଗବାନଙ୍କ କୀର୍ତ୍ତନ କରୁଥିବା ବ୍ୟକ୍ତି ସଦାଚାରୀ ଓ ଦୈବୀସମ୍ପତ୍ତିବାନ୍ ହେବା ଉଚିତ । ଯିଏ ଭଗବାନଙ୍କ ନାମ ଧରି ନାଚଗାନ କରେ, କିନ୍ତୁ ଆଚରଣ ଶୁଦ୍ଧ ନୁହେଁ, ତା' କୀର୍ତ୍ତନର ଭଲ ପ୍ରଭାବ ଲୋକମାନଙ୍କ ଉପରେ ପଡ଼େ ନାହିଁ । ଲୋକେ ତାକୁ ଆଦର୍ଶ ମନେ କରନ୍ତି ନାହିଁ ଏବଂ ତା' ଆଚରଣକୁ

ଅନୁସରଣ କରନ୍ତି ନାହିଁ, ଯାହାଫଳରେ ଅନ୍ୟ ଲୋକମାନଙ୍କୁ କୀର୍ତ୍ତନ ପ୍ରତି ଓ କୀର୍ତ୍ତନକାରଙ୍କ ପ୍ରତି, ଏପରି କି କୀର୍ତ୍ତନୀୟ ଭଗବାନଙ୍କ ପ୍ରତି ମଧ୍ୟ ଆକ୍ଷେପ କରିବାର ସୁଯୋଗ ମିଳେ । ତେଣୁ ଆମ୍ଭମାନଙ୍କ ଆଚରଣ ଦ୍ୱାରା ସଂକୀର୍ତ୍ତନ ଉପରେ ଓ ଭଗବାନଙ୍କ ଉପରେ ଯେପରି କଳଙ୍କ ନ ଲାଗେ, ସେଥିପ୍ରତି ଆମେ ଦାୟିତ୍ୱବାନ୍ ହେବା ବାଞ୍ଛନୀୟ । ବାସ୍ତବରେ ପବିତ୍ର ସଂକୀର୍ତ୍ତନ ଓ ଭଗବାନଙ୍କ ଉପରେ କଳଙ୍କ ଲାଗିବା ତ ଆଦୌ ସମ୍ଭବ ନୁହେଁ, ତଥାପି ଆମ ଦୋଷରୁ ଲୋକମାନଙ୍କୁ ଏପରି କହିବା ପାଇଁ ସୁଯୋଗ ଦେବା କାହିଁକି?

ଆଚରଣ ଶୁଦ୍ଧ ନ ଥିଲେ ମଧ୍ୟ କୀର୍ତ୍ତନ କରିବା ଉଚିତ, କିନ୍ତୁ ଏକାନ୍ତରେ କରିବା ଉଚିତ । ଆଚରଣର ଶୁଦ୍ଧତା ପାଇଁ ଭଗବାନଙ୍କ ଆଗରେ କାନ୍ଦିବା ଉଚିତ । ତାଙ୍କୁ ପ୍ରାର୍ଥନା କରିବା ଉଚିତ । ମାତ୍ର ସାବଧାନ! ସଂକୀର୍ତ୍ତନ ନାମରେ ଦୁରାଚରଣକୁ କଦାପି ଘୋଡ଼ାଇ ରଖନ୍ତୁ ନାହିଁ ଏବଂ ଦୁରାଗ୍ରହର ସମର୍ଥନ ତ କଦାପି କୌଣସି ପରିସ୍ଥିତିରେ ମଧ୍ୟ କରନ୍ତୁ ନାହିଁ ।

ସଂକୀର୍ତ୍ତନ ନାମରେ ବର୍ଣ୍ଣ ଓ ଆଶ୍ରମର କର୍ମଗୁଡ଼ିକୁ ଅବହେଳା ବା ଉପେକ୍ଷା କଦାପି ନ କରନ୍ତୁ । ସ୍ୱଧର୍ମ ପାଳନପୂର୍ବକ କୀର୍ତ୍ତନ କରିବା ଉଚିତ । ସଂକୀର୍ତ୍ତନ ନାମରେ ଜ୍ଞାନ, ବୈରାଗ୍ୟ, ସଦାଗ୍ରହ, ବର୍ଣ୍ଣାଶ୍ରମଧର୍ମ ଓ ସଂଧ୍ୟାଗାୟତ୍ରୀର ନିନ୍ଦା କରିବା ସର୍ବଥା ଅନୁଚିତ, ବରଂ ଏ ସମସ୍ତ ଅବଶ୍ୟ ପାଳନୀୟ ବୋଲି ବୁଝିବା ଉଚିତ । ଏଗୁଡ଼ିକୁ ଆଦର କରି ଶାସ୍ତ୍ରବିଧି ଅନୁସାରେ ଯଥାଯୋଗ୍ୟ ପାଳନ କରିବା ଉଚିତ ।

ସଂକୀର୍ତ୍ତନ ନାମରେ ପକ୍ଷପାତ କରିବା ବା ଭଗବାନଙ୍କ ନାମରେ ଉତ୍କୃଷ୍ଟତା ଓ ନିକୃଷ୍ଟତା ଭାବନା କରିବା ଓ ଦଳଗଠନ କରିବା ଅନୁଚିତ । ସଂକୀର୍ତ୍ତନ ପାଇଁ ସଂଗଠନ କରିବା ଉଚିତ, କିନ୍ତୁ ଦଳଗଠନ କରିବା ଅନୁଚିତ । ସରଳ, ପବିତ୍ର, ନିଷ୍କପଟ ଓ ନିଷ୍କାମ ଭାବରେ ତଥା ଅନନ୍ୟ ପ୍ରେମପୂର୍ବକ ଭଗବାନଙ୍କ ପବିତ୍ର ନାମକୁ ନିଜେ ଗାନ କରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ସେପରି କରିବା ପାଇଁ ପ୍ରେରଣା ଦେବା ଉଚିତ ।

ମାତ୍ର ଯେତେ ଦୂର ସମ୍ଭବ ଉପଦେଶକ, ନେତା ଅଥବା ଆଚାର୍ଯ୍ୟ ହେବା ଅନୁଚିତ । ପୂଜା, ସତ୍କାର, ମାନ, ବଡ଼ିମା ଇତ୍ୟାଦିରୁ ସର୍ବଦା ନିଜକୁ ରକ୍ଷା କରିବା ଉଚିତ । ଧନ ଓ ସ୍ତ୍ରୀର ଆସକ୍ତିରେ କେବେହେଲେ ପଡ଼ିବା ଉଚିତ ନୁହେଁ ।

ସଂକୀର୍ତ୍ତନ ସମୟରେ ମୁକ୍ତକଣ୍ଠରେ ଭଗବାନଙ୍କ ନାମଘୋଷ କରିବା ଉଚିତ । ଜ୍ଞାନ, ବିଦ୍ୱତ୍ତା, ପଦ, ଧନ ଆଦିର ଅଭିମାନରେ ନୀରବ ହୋଇ ବସିବା ଅନୁଚିତ । ଉଦ୍ଦଣ୍ଡ କୀର୍ତ୍ତନ ହେଉଥିଲେ ସଂକୋଚ ପରିତ୍ୟାଗ କରି ଉଦ୍ଦଣ୍ଡ କୀର୍ତ୍ତନ କରିବା ଉଚିତ । ଆମ ଆଚରଣ ଦ୍ୱାରା ଯେପରି ଭଗବନ୍ନାମ ସଂକୀର୍ତ୍ତନର ଅପମାନ ନ ହୁଏ, ସେଥିପ୍ରତି ସାବଧାନ! ଉଦ୍ଦଣ୍ଡ କୀର୍ତ୍ତନରେ ନାଚିବା ଉଚିତ, କିନ୍ତୁ ପ୍ରେମାବେଶ ହେଲେ ହିଁ ନାଚିବା ଉଚିତ, ଲୋକମାନଙ୍କୁ ଦେଖାଇବା ପାଇଁ ନୁହେଁ । କଳା ପ୍ରଦର୍ଶନ ପାଇଁ ନାଚିବା ଅଲଗା ଏବଂ ପ୍ରେମମୟ ଭଗବନ୍ନାମ ସଂକୀର୍ତ୍ତନରେ ନାଚିବା ଅଲଗା ।

ପ୍ରକାଶ ଥାଉ କି ଭଗବନ୍ନାମ କୀର୍ତ୍ତନ ଅତୀବ ଆଦରଣୀୟ ଓ ଉଚ୍ଚତର ସାଧନା । ଉଚ୍ଚାତିଉଚ୍ଚ ଭାବନାରେ ଏବଂ ଉଚ୍ଚାତିଉଚ୍ଚ ଆଚରଣରେ ଯୁକ୍ତ ହୋଇ ଏହି କୀର୍ତ୍ତନ କରିବା ଉଚିତ । ପବିତ୍ର ମନୁଷ୍ୟଙ୍କ ଦ୍ୱାରା କରାଯାଉଥିବା ଭଗବନ୍ନାମ ସଂକୀର୍ତ୍ତନର ଧ୍ୱନି ଯେତେ ଦୂର ପର୍ଯ୍ୟନ୍ତ ଯିବ, ସେହି ବାତାବରଣରେ ଥିବା ସମସ୍ତ ଜୀବଙ୍କର ଅନାୟାସରେ କଲ୍ୟାଣ ହୋଇ ପାରେ ।

—ସ୍ୱାମୀ ରାମସୁଖଦାସ



॥ ଶ୍ରୀହରିଃ ॥

# ଗୀତାପ୍ରେସ୍‌ରୁ ପ୍ରକାଶିତ ଓଡ଼ିଆ ପୁସ୍ତକାବଳୀ

## ସ୍ୱାମୀ ରାମସୁଖଦାସଙ୍କ ପ୍ରଣୀତ

430 ଗୃହସ୍ଥାଶ୍ରମରେ କିପରି ରହିବା?
754 ଗୀତାମାଧୁର୍ଯ୍ୟ
757 ଶରଣାଗତି
796 ଦେଶର ବର୍ତ୍ତମାନ ଦଶା ତଥା ତାହାର ପରିଣାମ
797 ସନ୍ତାନର କର୍ତ୍ତବ୍ୟ ଏବଂ ସତ୍ୟ ଆଶ୍ରୟ
798 ଗୁରୁତତ୍ତ୍ୱ
817 କର୍ମରହସ୍ୟ
852 ମୂର୍ତ୍ତିପୂଜା ଏବଂ ନାମଜପ
1003 ସତ୍‌ସଙ୍ଗ-ମୁକ୍ତାହାର
1004 ତାତ୍ତ୍ୱିକ ପ୍ରବଚନ
1005 ମାତୃଶକ୍ତିର ଘୋର ଅପମାନ
1121 ଶ୍ରୀମଦ୍‌ଭଗବଦ୍‌ଗୀତା ସାଧକ-ସଂଜୀବନୀ ଟୀକା
1130 ଗୁରୁ ବିନା କଣ ମୁକ୍ତି ନାହିଁ?
1138 ଆତ୍ମୀୟ ଭଗବାନ
1139 କଲ୍ୟାଣକାରୀ ପ୍ରବଚନ
1208 ଆଦର୍ଶ କାହାଣୀ ଚୟନ
1209 ପ୍ରଶ୍ନୋତ୍ତର ମଣିମାଳା
1267 ସହଜ ସାଧନା
1268 ବାସ୍ତବ ସୁଖ
1269 ଆବଶ୍ୟକ ଶିକ୍ଷା
1270 ନିତ୍ୟଯୋଗର ଉପଲବ୍ଧି
1298 ଗୀତାଦର୍ପଣ
1299 ଭଗବାନ ଓ ଭଗବଦ୍‌ଭକ୍ତି
1321 ଈଶ୍ୱରମୟ ଏ ଜଗତ
1464 ଅମୃତ ବିନ୍ଦୁ
1465 ଗୀତା ଅନ୍ୱୟ ଓ ଅର୍ଥ
1473 ସାଧନ-ସୁଧା-ସିନ୍ଧୁ
1511 ସର୍ବଜନ ଶ୍ରେୟ ପନ୍ଥା
1512 ସାଧନାର ଦୁଇଟି ପ୍ରଧାନ ସୂତ୍ର

## ଶ୍ରୀ ହନୁମାନପ୍ରସାଦ ପୋଦ୍ଦାରଙ୍କ ପ୍ରଣୀତ

865 ପ୍ରାର୍ଥନା
1011 ଆନନ୍ଦ ଲହରୀ
1041 ବ୍ରହ୍ମଚର୍ଯ୍ୟ ଓ ମନକୁ ବଶ କରିବାର କେତୋଟି ଉପାୟ
1186 ଶ୍ରୀଭଗବନ୍ନାମ
1251 ଭବରୋଗର ଔଷଧ ରାମବାଣ

## ଶ୍ରୀ ଜୟଦୟାଲ ଗୋୟନ୍ଦକାଙ୍କ ପ୍ରଣୀତ

1038 ସନ୍ଥ-ମହିମା
1039 ଭଗବାନଙ୍କର ଦୟା ଏବଂ ଭଗବତ୍ କୃପା
1040 ସତ୍‌ସଙ୍ଗର କିଛି ସାରକଥା
1078 ଭଗବତ୍‌ପ୍ରାପ୍ତିର ବିବିଧ ଉପାୟ
1079 ବାଲ୍ୟ-ଶିକ୍ଷା

1089 ଧର୍ମ କ'ଣ? ଭଗବାନ୍ କ'ଣ?
1090 ପ୍ରେମର ବାସ୍ତବ ସ୍ୱରୂପ ଓ ଶୋକନାଶର ଉପାୟ
1091 ଆମର କର୍ତ୍ତବ୍ୟ
1100 ଶ୍ରୀମଦ୍ଭଗବଦ୍‌ଗୀତା ତତ୍ତ୍ୱବିବେଚନୀ ଟୀକା
1163 ବାଳକଙ୍କ କର୍ତ୍ତବ୍ୟ
1174 ଆଦର୍ଶ ନାରୀ ସୁଶୀଳା
1187 ଆଦର୍ଶ ଭ୍ରାତୃ-ପ୍ରେମ
1203 ନଳ-ଦମୟନ୍ତୀ

1205 ରାମାୟଣର କେତେକ ଆଦର୍ଶ ପାତ୍ର
1220 ସାବିତ୍ରୀ ଓ ସତ୍ୟବାନ୍
1221 ଆଦର୍ଶ ଦେବୀଚରିତ୍ର
1252 ଭଗବାନଙ୍କ ରହିବାର ପାଞ୍ଚୋଟି ସ୍ଥାନ
1253 ପରଲୋକ, ପୁନର୍ଜନ୍ମ ଏବଂ ବୈରାଗ୍ୟ
1274 ପରମାର୍ଥସୂତ୍ର-ସଂଗ୍ରହ
1506 ଅମୂଲ୍ୟ ସମୟର ସଦୁପଯୋଗ

## ବିବିଧ

541 ଶ୍ରୀମଦ୍ଭଗବଦ୍‌ଗୀତା ଓ ବିଷ୍ଣୁସହସ୍ରନାମ (କେବଳ ଶ୍ଳୋକ, ପକେଟ ସାଇଜ୍)
815 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଳୋକାର୍ଥ ସହିତ, ବନ୍ଧାଇ)
826 ଗର୍ଭପାତ ଉଚିତ ବା ଅନୁଚିତ ଆପଣ ଭାବନ୍ତୁ
854 ଭକ୍ତରାଜ ହନୁମାନ
856 ଶ୍ରୀହନୁମାନଚାଳିଶା
863 ନବଦୁର୍ଗା (ଚିତ୍ରକଥା)
1008 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଳୋକାର୍ଥ ସହିତ, ପକେଟ ସାଇଜ)
1009 ଜୟ ହନୁମାନ (ଚିତ୍ରକଥା)
1010 ଅଷ୍ଟବିନାୟକ (ଚିତ୍ରକଥା)
1036 ଶ୍ରୀମଦ୍ଭଗବଦ୍‌ଗୀତା (ଲଘୁ ଆକାର)
1068 ଗଜେନ୍ଦ୍ରମୋକ୍ଷଣସ୍ତୋତ୍ରମ୍
1069 ନାରାୟଣକବଚମ୍
1070 ଆଦିତ୍ୟହୃଦୟସ୍ତୋତ୍ରମ୍
1154 ଗୋବିନ୍ଦଦାମୋଦରସ୍ତୋତ୍ରମ୍
1157 ଶ୍ରୀମଦ୍ଭଗବଦ୍‌ଗୀତା (ଅର୍ଥ ସହିତ)
1173 ଭକ୍ତ ଚନ୍ଦ୍ରିକା

1200 ସତ୍ୟପ୍ରେମୀ ହରିଶ୍ଚନ୍ଦ୍ର
1201 ମହାତ୍ମା ବିଦୁର
1202 ପ୍ରେମୀ ଭକ୍ତ ଉଦ୍ଧବ
1204 ସୁନ୍ଦରକାଣ୍ଡ (ମୂଳ ପାଠ)
1218 ଶ୍ରୀରାମଚରିତମାନସ (ମୂଳ ପାଠ, ବଡ଼ ଅକ୍ଷର)
1219 ଶ୍ରୀପଞ୍ଚରତ୍ନଗୀତା
1248 ମୋହନ (ଚିତ୍ରକଥା)
1249 କହ୍ନେଇ (ଚିତ୍ରକଥା)
1250 ଓଁ ନମଃ ଶିବାୟ (ଚିତ୍ରକଥା)
1254 ସାଧନ-ନବନୀତ
1342 ବଡ଼ମଣିଷଙ୍କ ଜୀବନରୁ ଶିକ୍ଷା
1463 ଶ୍ରୀରାମଚରିତମାନସ (ଅର୍ଥ ସହିତ)
1476 ଶ୍ରୀଦୁର୍ଗାସପ୍ତଶତୀ (ଅର୍ଥ ସହିତ)
1494 ଚିତ୍ରମୟ ଚୈତନ୍ୟ ଲୀଳା
1509 ରାମରକ୍ଷାସ୍ତୋତ୍ର
1551 ଅତିବଡ଼ୀ ଜଗନ୍ନାଥଦାସ ପ୍ରଣୀତ ଶ୍ରୀମଦ୍‌ଭାଗବତ
1750 ଶ୍ରୀମଦ୍‌ଭାଗବତ ଏକାଦଶ ସ୍କନ୍ଧ (ଶ୍ରୀଜଗନ୍ନାଥଦାସକୃତ)